# CABITABALI

## Part II.

Sixth Edition.

BY

MADHUSUDAN RAO

AND

RADHANATH RAI

Published by

Raja Baikunthanath Deb Bahadoor

# କବିତାବଳୀ ।

ଦ୍ୱିତୀୟ ଭାଗ ।

ଶ୍ରୀ ମଧୁସୂଦନ ରାଓ ଓ ଶ୍ରୀ ରାଧାନାଥ ରାୟଙ୍କ

କର୍ତ୍ତୃକ ବିରଚିତ ।

ରାଜା ବୈକୁଣ୍ଠନାଥ ଦେବ ବାହାଦୂରଙ୍କ ଦ୍ୱାରା

ପ୍ରକାଶିତ ।

ଷଷ୍ଠ ମୁଦ୍ରଣ ।

---


Printed by K. P. Das

at the De's Utkal Press

2 Manikkham Street

BALASORE

1899.

ମୂଲ୍ୟ ଚଉଅଣାମାତ୍ର ।

# କବିତାବଳୀ ।

## ଦ୍ୱିତୀୟ ଭାଗ ।

### ଆକାଶ ପ୍ରତି ।

୧

ଅନନ୍ତ ଅପାର ଶୂନ୍ୟରେ ମହା ଆକାଶ,
ପୃଥିବୀର କୀଟ ମୁହିଁ କ୍ଷୁଦ୍ରବୁଦ୍ଧି ନର ।
କି ମହାନ କି ଗମ୍ଭୀର ତୋହର ପ୍ରକାଶ,
ଭାବିଲେ ସ୍ତମ୍ଭିତ ଚିତ୍ତ ହୁଅଇ ମୋହର ।

୨

ନ ଥିଲା ରେ ଯେତେବେଳେ ବିଚିତ୍ର ଭୁବନ,
ନ ଥିଲା ଏ ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରାବଳୀ ।
ନ ଥିଲା ଧରଣୀ ଏହି ଭୂତ ନିକେତନ,
ଅନନ୍ତ ଅନ୍ଧାରେ ପୂର୍ଣ୍ଣ ଥିଲା ସର୍ବ ସ୍ଥଳୀ ।

୩

ଅନନ୍ତ ନିବିଡ଼ ଘୋର ଅନ୍ଧକାରମୟ,
ଥିଲା ବର୍ଣ୍ଣ-ରୂପ-ରେଖା-ଶୂନ୍ୟ ନିରାକାର ।
ନିସ୍ତରଙ୍ଗ ଥିଲା ଯେବେ ଅନନ୍ତ ସମୟ,
ଘଟଣା ବିହୀନ ଘୋର କାଳପାରାବାର ।

୪

ନ ଥିଲା ଯେ କାଳେ ସୃଷ୍ଟି--ଲୀଳା ଜଗତର,
କେବଳ ଜାଗ୍ରତ ଥିଲେ ଅନାଦି କାରଣ ।
ଦେଶ କାଳାତୀତ ବାକ୍ୟ--ମନ-ଅଗୋଚର
ଅନନ୍ତ ଚୈତନ୍ୟମୟ ବ୍ରହ୍ମ ସନାତନ ।

୫

ସେ କାଳରେ ଅବଲମ୍ବି ଅନାଦି କାରଣେ
ଅସୀମ ଆକାଶ ! ତୁହି ମହାମହିମାରେ
( ସେ ମହିମା ସ୍ତବ୍ଧ ଚିତ୍ତ ଯହାର ଚିନ୍ତନେ )
ବିରାଜିତ ଥିଲୁ ବେଢ଼ି ଅନନ୍ତ ଅଙ୍କରେ ।

୬

ସହସା ପ୍ରଥମ—ଊର୍ମି ମହାକାଳ ନୀରେ
ଖେଳିଲା ଅନନ୍ତ ମହା ମହେଶ—ଆଦେଶେ
ସହସା ପ୍ରକାଶେ ଜ୍ୟୋତି—ଧାରା ତୋ ଶରୀରେ
ଶୁଭ୍ର ମନ୍ଦାକିନୀ ଯଥା ବ୍ୟୋମକେଶ କେଶେ ।

୭

ସାକ୍ଷୀ ତୁହିରେ ଗଗନ ସୃଷ୍ଟି ପ୍ରକ୍ରିୟାର,
ଦେଖିଲୁ କେମନ୍ତେ ଜ୍ୟୋତି ଭେଦି ତମୋରାଶି
ପ୍ରକାଶିଲା କୋଟି କୋଟି ସୁନ୍ଦର ସଂସାର,
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା ତୋ ଦେହେ ବନ୍ୟାସି ।

୮

ପୃଥିବୀ ଜନମ ତୁହି ଦେଖିଲୁ ଗଗନ,
ଜଳ-ସ୍ଥଳ-ଅଗ୍ନି-ବାୟୁ—ସଂଗ୍ରାମ ଭୈରବ ।
ଦେଖିଲୁ ହିମାଦ୍ରି ଆଦି ଗିରି-ଉନ୍ନମନ,
ଅଚଳ ଶିଖରୁ ନଦ ନଦୀର ଉଦ୍ଭବ ।

୯

ପୁଷ୍ପର ପ୍ରଥମ ହାସ୍ୟ ତୋହର ଗୋଚର,
ପ୍ରଥମ ଜୀବର ସୃଷ୍ଟି ତୋର ସନ୍ନିଧାନେ,
ସୃଷ୍ଟି ଆଦି-ନର-ନାରୀ ଅଗ୍ରତେ ତୋହର,
ସର୍ବଦର୍ଶୀ ଅଟୁ ତୁହି ବିଧିର ବିଧାନେ ।

୧୦

ଅଂଶତର ଉପାଦାନ କେ ଜାଣେ ତୋ ପର,
ସୁଖ ଦୁଃଖମୟ ଯେତେ ଘଟନା ନିଚୟ
ଘଟୁଛି ଜଗତେ, ସବୁ ବିଦିତ ତୋହର
ତୋ ଅଗ୍ରତେ ରାଜ୍ୟ ନାଶ; ରାଜ୍ୟ—ଅଭ୍ୟୁଦୟ ।

୧୧

ବଳିଷ୍ଠର ଅତ୍ୟାଚାର, ଦୁର୍ବଳ-ଦୁର୍ଗତି,
ସ୍ୱାର୍ଥ ପ୍ରେମୀ ଲୋଭାନ୍ଧର କ୍ରୂର ପ୍ରବଞ୍ଚନା,
ଦେଖିଛୁ କେବଳ, ବ୍ୟୋମ ଗମ୍ଭୀର ମୂରତି
ତୋପରବୁଝିବ କିଏ ପୃଥ୍ୱୀ ବେଦନା ।

୧୨

ଆଦ୍ୟ ସୃଷ୍ଟି କାଳୁ ଅବଗାହି ଜ୍ୟୋତିଜଳେ,
କି ସୁନ୍ଦର କି ଉଦାର ଦେହଶ୍ରୀ ତୋହର ।
କହ ବ୍ୟୋମ କିଏ ଅଛି ଏ ବିଶ୍ୱମଣ୍ଡଳେ,
ତୋ ରୂପେ ନୁହଇ ମୁଗ୍ଧ ଯାହାର ଅନ୍ତର ।

୧୩

ନିଖିଳ ସୌନ୍ଦର୍ଯ୍ୟ ଲୀଳା ତୋହର ଉତ୍ସଙ୍ଗେ,
ନିତ୍ୟ ଲୀଳାମୟି ତୁହି କବିତା ଦେବୀର;
ନାଚଇ ଅଗଣ୍ୟ ବିଶ୍ୱ ନିତ୍ୟ ଲୀଳା ରଙ୍ଗେ;
ତୋ ମହା ସ୍ଥଳ ବକ୍ଷେ ଶାସନେ ବିଧିର ।

୧୪

କେତେ ବେଶଧର ବ୍ୟୋମ ହୋଇ ପ୍ରକାଶିତ;
କେତେବେଳେ ଦିଗମ୍ବରେ ତୁହି ନୀଳାମ୍ବର;
ନକ୍ଷତ୍ର ଶଶାଙ୍କେ କେବେ ତୋ ଦେହ ଭୂଷିତ;
କେବେ ମେଘ-ଆଡମ୍ବରେ ଦିଶୁ ଭୟଙ୍କର ।

୧୫

ସୁହାସିନୀ ଉଷାଦେବୀ ଅଲୋକ-ନନ୍ଦନୀ
ବନ୍ଦେ ଭକ୍ତିଭରେ ଯେବେ ତୋର ପଦତଳେ;
ସନ୍ଧ୍ୟା ହସଇ ଜାଗି ଝିଲ୍ଲୀଯେ ମଣ୍ଡନୀ;
ଲବଣ୍ୟ ଲହରୀ ଉଛୁଳଇ ଜଳେସ୍ଥଳେ ।

୧୬

ସନ୍ଧ୍ୟା କଟାକ୍ଷେ ତୋର ରବି ଜ୍ୟୋତିର୍ମୟ
ରଞ୍ଜଇ ଧରଣୀ ମୁଖ କନକ-କଙ୍କଣ;
ସନ୍ଧ୍ୟା ଫୁଟଇ ଫୁଲ ବହଇ ମଳୟ
ବିହଙ୍ଗ ସଙ୍ଗୀତ ଗାଏ ସୁମଧୁର ସ୍ୱନ ।

୧୭

ରଞ୍ଜିତ ଜଳଦମଞ୍ଚୁ ଯେବେ ଅବତରେ
ବୁଡ଼ଇ ପଶ୍ଚିମେ ଭାନୁ କୋଳରେ ଚାନ୍ଦର;
ଧୀରେ ଧୀରେ ଅନ୍ଧକାର ଗୌରବ ଧର;
ମଣ୍ଡଇ ନକ୍ଷତ୍ରମାଳ ତୋର କଳେବର ।

୧୮

କି ଗମ୍ଭୀର କି ପ୍ରଶାନ୍ତ ଭାବ ଶର୍ବରୀରେ
ଜାଗଇ ଭାବୁକ ମନେ ତୋର ଦରଶନେ;
କି ମହାନୀରବ ବେଦ ପଢ଼ୁ ଗମ୍ଭୀରେ;
ଶୁଣଇ ନୀରବ ଚିତ୍ତ ଉଚ୍ଚ ସ୍ତବ୍ଧଧ୍ୟାନେ ।

୧୯

କୌମୁଦୀ-ରଞ୍ଜିତ ତୋର ନୀଳ କଳେବର;
ପ୍ରଶାନ୍ତ ପବିତ୍ର ମୂର୍ତ୍ତି ଭୁବନମୋହନ;
ନିମେଷେ କରଇ ଆତ୍ମା କଲୁଷିତ ସୁନ୍ଦର;
ନିର୍ମଳେ ପବିତ୍ର କରେ କଳୁଷିତ ମନ

୧୦

ଗଭୀର ନିଶିଥ କାଳେ ନିଦ୍ରିତା ଧରଣୀ
ସ୍ୱପନେ ତୋ ମହାମୂର୍ତ୍ତି କରେ ଦରଶନ ।
ହସଇ ନୀରବେ ତେଣୁ ମହାନନ୍ଦେ ଧନା
ସୁପ୍ତଶିଶୁ ଦେଖି ଯେହ୍ନେ ସ୍ୱର୍ଗୀୟ ସ୍ୱପନ ।

୧୧

ଧନ୍ୟ ଧନ୍ୟ ରେ ଆକାଶ ଧନ୍ୟ ତୋ ମହିମା
ମହାଭାବ ଉପୁଜଇ ତୋର ଦରଶନେ ।
ଉଦାର ପ୍ରଶାନ୍ତ ତୋର ଅନନ୍ତ ନୀଳିମା
ସଂସାରର କ୍ଷୁଦ୍ରଭାବ ବିନାଶଇ କ୍ଷଣେ ।

୧୨

ମୁହୂର୍ତ୍ତକେ ଘେନୁ ମୋତେ ରେ ମହାଗଗନ
ପରମାତ୍ମା ପ୍ରାଣସଖା ମହେଶ ଶ୍ରୀପଦେ ।
ମହା ପ୍ରେମାବେଶେ ଅଶ୍ରୁ ବର୍ଷେ ମୋ ନୟନ
ଲଭଇ ମୁ ସ୍ୱରଗର ଆନନ୍ଦ ସମ୍ପଦେ ।

---

## ଜୀବନସନ୍ଧ୍ୟା ।

୧

ରେ ଆତ୍ମନ୍ ; ନିଦ୍ରା ପରିହର ;
ଫେଡ଼ି ସନ୍ଧ୍ୟାର ଲୋଚନ ; କର କର ନିରୀକ୍ଷଣ
ନିଃଶବ୍ଦେ ଜୀବନସ୍ରୋତ ଧାଉଛି କିପରି ;
ଭେଟିବାକୁ ମୃତ୍ୟୁ-ସିନ୍ଧୁ-କରାଳ-ଲହରୀ ।

୨

କି ବେଗରେ ଯାଉ ଅଛୁ ଚଳି
ସେହ୍ନ ସ୍ରୋତ ସଙ୍ଗେ ଭାସି ; ଜୀବନର ସୁଖରାଶି

ଯାହାର ସ୍ମରଣେ ନର ଶୋକଶ୍ୱାସ ଛାଡ଼େ ;
ଅଜ୍ଞତକୁ ଉଦ୍‌ବୋଧଇ ବୃଥା ଭାଳ ଭାଳ ।

୩

ସ୍ୱପ୍ନ ସମ ନିଦ୍ରା-ପାରାବାରେ
କ୍ଷଣକେ ବୁଡ଼ଇ ଲୀନ ; ଗର୍ବ ଦମ୍ଭ ଅଭିମାନ
ସଂସାରର ଆଡ଼ମ୍ବର ବୁଦ୍‌ବୁଦ ଆକାରେ
ସକଳ ଗ୍ରାସଇ କାଳ-ମୁଖ ନିର୍ବିଘ୍ନରେ ।

୪

ସେ ସିନ୍ଧୁ-ତରଙ୍ଗ ମୁଖ ପ୍ରତି ;
ଆକୃଷ୍ଟ ଅଦୃଶ୍ୟଭାବେ ; ଦେହଜ ଅଛି ସବୁ ଭବେ
ମୃଦୁ ନିର୍ଝରଣୀ ; ମହାବେଗା ସ୍ରୋତସ୍ୱତୀ
ସୁଧୀର ମନୁଷ୍ୟ ; ମହାଯଶା ମହୀପତି ।

୫

ଭବସିନ୍ଧୁ ମାୟାଶୈଳମୟ
ସମସ୍ତ ଛଳନା ପୂର୍ଣ୍ଣ ; ସେ ଶୈଳ ସର୍ବଦା ଚୂର୍ଣ୍ଣ
ହୁଅଇ ଆଶାର ତରୀ ; କାମନା ନିଚୟ
ବିଫଳ ସଘାତ ; ଚିତ୍ତ ନୈରାଶ୍ୟ-ଆଳୟ ।

୬

ଜଗତର ଲୋଚନ ନନ୍ଦନ
ଯୁବତୀର ରକ୍ତାଧର , ରମ୍ୟଜ୍ୟୋତି ନୟନର
ସ୍ୱର୍ଣ୍ଣ ଧନ ସମ ବକ୍ଷ ଚାରୁ ପଦ୍ମାନନ
ଇନ୍ଦ୍ରଧନୁ ଶୋଭାସମ ପଳାନ୍ତି ବହିନ ।

୭

ଯୁବକର ତେଜ ବୀର୍ଯ୍ୟ ବଳ ,
ପ୍ରୌଢ଼ର ଚତୁରଜ୍ଞାନ , ସୁକୌଶଳ କାର୍ଯ୍ୟମାନ

କାଳର ପ୍ରଭାବେ ଯତ୍ନେ ହୋଇବ ବିଫଳ
ନସ ଏଜଗତେ କିଛି ସ୍ଥିର ଅଚଞ୍ଚଳ ।

୮

ଧନ ମାନ ଯଶ ଆଦି ଯାହା
ଭାଗ୍ୟ ଦେବୀ ପ୍ରସାଦରେ , ଏଭବେ ଲଭନ୍ତି ନରେ
କାଳଚକ୍ର ଆବର୍ତ୍ତନେ ଛ ବେଗରେ ଆହା
ପଳାନ୍ତିରେ ଅନୁସରି ନିଜ ନିଜ ରାହା

୯

ବିମୋହନ ମନ୍ମଥ ବିଳାସ ।
ଠାଣେ ମନ ମାୟା ଯନ୍ତ୍ରେ , ଛଳଏ କପଟ ମନ୍ତ୍ରେ
କୌଶଳେ ଜନ୍ମଇ ଚିତ୍ତେ କ୍ଷଣିକ ଉଲ୍ଲାସ
ଉତ୍ଫୁଲ୍ଲ ବଦନକୁ କରାଏ ପ୍ରକାଶ ।

୧୦

ଅମ୍ବାରାଜ୍ୟେ ସେ ଶ୍ରୀମ ବନ୍ଧେ
ଧର୍ମର ପୁଣ୍ୟରାଜତ୍ୱ , ଧ୍ୱଙ୍କାର ମହିତ ତତ୍ତ୍ୱ
ହୁଏ ପରିହତ , ପାପ ଗର୍ଜନ ଭୈରବେ
ପଳାୟନ କରେ ଶାନ୍ତି ସେହି ଉପଦ୍ରବେ ।

୧୧

ମୁକୁଟ ମଣ୍ଡିତ ରାଜଶିର
ନୁହଇ ଶାନ୍ତି ଆସ୍ପଦ , ଆଶଙ୍କା ଭୟ ବିପଦ
ନିରନ୍ତର ରାଜମନ କରଇ ଅସ୍ଥିର
ଆଜ ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର ।

୧୨

ଏ ସଂସାରେ ନାହିଁ ସୁଖଶାନ୍ତି
ଅହଙ୍କାର ଦ୍ୱେଷ ରୋଷ , ଲୋଭ ମୋହ ଅସନ୍ତୋଷ

ଦୁଷ୍ଟ ରିପୁକୁଳ ଘୋର ଅନର୍ଥ ଘଟାନ୍ତି ,
ଯାପର ଭୀଷଣାବର୍ତ୍ତେ ନରେ ନିକ୍ଷେପନ୍ତି !

୧୩

କାହିଁ ଶାନ୍ତି, କାହିଁ ନିତ୍ୟ ସୁଖ
ଯାହା ଲଭିବାର ଲାଗି ଅଛୁ ଅବିରତ ଜାଗି
ଚିତ୍ତ ଗୃହେ ଆଶାହୀନ ଉଜ୍ଜ୍ୱଳ ମୟୂଖ
କାହିଁ ଗଲେ ପାସୋରିବ ମୃତ୍ୟୁ ପାପ ଦୁଃଖ ।

୧୪

ରେ ହୃଦୟ ନ ହୁଅ କାତର
ସଂସାରର ବିଡ଼ମ୍ବନା ପାପ ସନ୍ତାପ ଯାତନା
ବିପଦ ଦୁର୍ଦ୍ଦିନ ତମ ଘୋର ଭୟଙ୍କର
ନଷ୍ଟେ, ନିରାଶା ବଶେ ନ ହୁଅ ଜର୍ଜ୍ଜର ।

୧୫

ଧର ଧୈର୍ଯ୍ୟ ଯେନରେ ସାନ୍ତ୍ୱନା
ଅଛି ସେହି ମହୌଷଧ , ସେ ମହା ସ୍ୱର୍ଗ ଔଷଧ
ସେ ଅମୃତ ମହୌଷଧ ଯାହାର କମନା
ଆଶା, ଜାଗ୍ରତ ସତତ , କରେ ଉଦ୍ଦୀପନା ।

୧୬

ସ୍ଥିର ହୁଅରେ ଚଞ୍ଚଳ ମନ
ଯେନ ମହାତ୍ମା ଦୀକ୍ଷା ଜୀବର ପରମ ଶିକ୍ଷା
ତେବେରେ ଲଭିବୁ ସେହି ପ୍ରଶାନ୍ତ ଧନ ,
ଅକୂଳ ହୃଦୟେ କରୁ ଯାର ଅନ୍ୱେଷଣ ।

୧୭

ଧୂଳିର ଏ ନର କଳେବର
( ଅହୋ ମାନବ ଜୀବନ , କି ଅଦ୍ଭୁତ ଉଦ୍ଭାବନା )

ଝଲକେ ଅମର ଆତ୍ମା ଦିବ୍ୟ ସୌନ୍ଦର୍ଯ୍ୟରେ
କମଳ ଶୋଭଇ ଯଥା ପଙ୍କମୟ ସରେ ।

୧୮

ଏ ସଂସାର ଅନ୍ଧକାର ସ୍ଥାନ
ଅନ୍ଧାରେ ହେଲେ ଜଡ଼ିତ , ନ ହୁଅଇ ବିକଶିତ
ଜୀବାତ୍ମା କୁସୁମ ଏଥି ହୁଏ ମ୍ରିୟମାଣ
ହରାଇଣ ଦିବ୍ୟ ଶୋଭା, ପ୍ରେମ ଭକ୍ତି ଜ୍ଞାନ

୧୯

ଦିବାଲୋକରେ ନିରେଖି ଗଗନେ
ହର୍ଷେ ଫୁଟେ ପଦ୍ମ ଫୁଲ , ତେସନେ ଆତ୍ମା ପ୍ରଫୁଲ୍ଲ
ଅନନ୍ତ ମଙ୍ଗଳାଳୟ ବିଭୁ ଦରଶନେ
ପୁଣ୍ୟର ତପନ ଯେନ୍ତୁ ପାପର ଭୁବନେ ।

୨୦

ଯହିଁ ଦେବେ ଭୁଞ୍ଜନ୍ତି ଅମୃତ
ବିଭୁ ପାଦପଦ୍ମ ପାଶେ , ପୁଣ୍ୟ ଜ୍ୟୋତିର୍ମୟ ବାସେ,
ରୋଗ ପାପ ମୃତ୍ୟୁ ଆଦି ଯହିଁ ପରିଭୂତ
ସେ ସୁଧାମ ଲାଗି ଆତ୍ମା ସଦା ପିପାସିତ ।

୨୧

ଏ ପିପାସା ନିବୃତ୍ତ ନିବାର
ଅସାର ସଂସାର ଜଳେ , ଉପୁଚୟ କୁଳାହଳେ
ନୋହେ ନିବାପିତ କେବେ ; ଏକା ଧର୍ମ ବାର
ଶମଇ ଏ ମନ୍ଦା ଅଗ୍ନି ଅମୃତ ସଞ୍ଚାର ।

୨୨

ତେବେ ଅରେ ଅସ୍ଥିର ହୃଦୟ
ତ୍ୟଜି କୁତ୍ସିତ ବାସନା , କର ତାଙ୍କ ଆରାଧନା

ଧର୍ମଧ୍ୱଜ ପ୍ରଭୁ ଯେହୁ ମଙ୍ଗଳ-ଅଳୟ
ଅମୃତ ଜୀବନଦାତା ବ୍ରହ୍ମାଣ୍ଡ ଆଶ୍ରୟ ।

୧୩

ପରଦତ୍ତ ପାପ ପ୍ରଲୋଭନ
ଉଚ୍ଛନ୍ନ କର ବିଶ୍ୱାସ, ସ୍ୱାର୍ଥ ଅହଂକାର ନାଶ
କର ରେ ହୃଦୟାକାଶ ନିର୍ମଳ ବଦନ
ତେବେ ରେ ଲଭିବୁ ଧର୍ମ ରସ ଆସ୍ୱାଦନ ।

୧୪

ପ୍ରୀତିମୟ ଜୀବନ ରତନ
ଦେବେ ତୋତେ ପରମେଶ, ତାଙ୍କର ପବିତ୍ରାଦେଶ
ନିସ୍ୱାର୍ଥ ପବିତ୍ର ଚିତ୍ତେ କରରେ ସାଧନ
ଜଗତର ହିତ ଅର୍ଥେ ଦିଅରେ ଜୀବନ

୧୫

ହେ ଈଶ୍ୱର ପତିତ ତାରଣ
ପ୍ରଣାଧମେ ନିରଞ୍ଜନ, ଭୟ ବିଘ୍ନ ବିନାଶନ
ତୁମ୍ଭେ ପ୍ରଭୁ ସନ୍ତାପିତ ପ୍ରାଣର ଚନ୍ଦନ
ସଂସାର ବିପାକୁ ନେବେ ତୁମ୍ଭେ ହେ ଅଞ୍ଜନ ।

୧୬

ଆସ, ନାଥ, ଅଗତିର ଗତି
ତୁମ୍ଭ ବିନା ଏସଂସାରେ, ମରଇ ମୁଁ ହାହାକାରେ
ତାର ମୋତେ ମହାପ୍ରଭୁ ଦେଇଣ ସୁମତି
ଅନନ୍ତ ଦୟା ତୁମ୍ଭର ଅନନ୍ତ ଶକତି ।

---

ଭାରତ-ଈଶ୍ୱରୀ ।

(ଭିକ୍ଟୋରିୟା)

ସୁନୀଳ ସାଗରେ ରାଜେ ଶ୍ୱେତ ଦ୍ୱୀପ,
ଅଜେୟ ଜଗତେ ନାମ ବ୍ରିଟାନୀୟା ।

ପ୍ରାକାର ଯହର , ନୀଳ ପାରାବର ,
ଅଖିଳ ଅବନୀ ମଧ୍ୟେ ମାନନୀୟା ।
ଅନନ୍ୟ ଜଗତେ ବ୍ରିଟିଶ କେଶରୀ ,
ବ୍ୟାପିଛୁ ଯା ଯଶ ସର୍ବ ମର୍ତ୍ତ୍ୟପୁର ।
ଜଗତ ନୟନ , ସୁଧାଂଶୁ ତପନ ,
କିରଣର ଗତି ଯାଏ ଯେତେ ଦୂର ,
ଦୁର୍ଦ୍ଧର୍ଷ ସର୍ବଦା ଶ୍ୱେତ ଦ୍ୱୀପ ଶୂର । ୧୦ ।
ନିରପେକ୍ଷ ଯେହ୍ନୁ ଶମନ ସମାନ ,
ରୋଷେ ବିଶ୍ୱାନର ପ୍ରାଏ ସର୍ବନାଶୀ ,
ନ୍ୟାୟେ ବୃହସ୍ପତି, ପାଳନେ ଶ୍ରୀପତି ,
ଦୟାର ଆଧାର ଶ୍ୱେତଦ୍ୱୀପବାସୀ ,
ଶାନ୍ତ ସତ୍ତ୍ୱେ କ୍ଷମା ଗୁଣ ପରକାଶି । ୧୫ ।
ଖଟନ୍ତି ଯାପନ୍ତେ ଯେହ୍ନେ ଦନ୍ତ କରି ତ୍ରାସ ,
ବଜ୍ଞାନ କୌଶଳେ, ଉଠି ନଭସ୍ଥଳେ ,
ତାରା ସଙ୍ଗେ ଯେହ୍ନୁ କରନ୍ତି ସମ୍ଭାଷ ,
ତଡ଼ିତ ସଙ୍ଗେ ଯେ କରନ୍ତି ବିଳାସ ,
ମେରୁ ମହାଶୀତ ଭୂଧର ଉପରେ ,
ନିରକ୍ଷମଣ୍ଡଳ ଅଗମ୍ୟ ଉତ୍ସଙ୍ଗେ ,
ସାଗର ବକ୍ଷରେ , ଭୂଧର କନ୍ଦରେ ,
ସର୍ବତ୍ର ଶ୍ୱେତାଙ୍ଗେ ବିହରନ୍ତି ରଙ୍ଗେ ,
ରତ ଅବିରତ ବିଜ୍ଞାନ ପ୍ରସଙ୍ଗେ । ୨୫ ।
ସାଗର କେଶରୀ ସଖ କ କେଶର ,
ଗରଜେ ଯେ କାଳେ ଉଗାରି ଅନଳ ,
କମ୍ପେ ବସୁମତୀ , କମ୍ପେ ଅମ୍ବୁପତି ,
ବୁଡ଼ାଇ ଦିଅଇ ସାଗର ଚଞ୍ଚଳ ,

ଧନୁକରେ ବଜ୍ରଧ୍ୱଜ ଅଚଞ୍ଚଳ । ୩୦ ।
ସ୍ୱାଧୀନତା ଦେବୀ ପ୍ରିୟ ନିକେତନ ,
ଅଟେ ଯେ ବ୍ରିଟେନ , ଯେ ଦ୍ୱୀପ ଈଶ୍ୱରୀ
ପୂର୍ବ ଭାଗ୍ୟ ଫଳେ ପୂର୍ବ ତପୋବଳେ ,
ଆର୍ଯ୍ୟଙ୍କର ଆଜି ରାଜରାଜେଶ୍ୱରୀ !
ମଣି କାଞ୍ଚନର ସଂଯୋଗ ଏପରି । ୩୫ ।
ମାନବ ଦାସତ୍ୱ ଶୃଙ୍ଖଳ ମୋଚନ
କଲା ଯେଉଁ ଜାତି , ସ୍ୱାଧୀନତା ଦାନ
ଯାର ନିତ୍ୟବ୍ରତ ; ତାର ଅନୁଗତ ,
ଆଜି ଏ ଯାବନ୍ତ ଭାରତ ସନ୍ତାନ ,
ଏ ଅଟେ ଭାରତ ମଙ୍ଗଳ ନିଦାନ । ୪୦ ।
ଆଜି ଭାରତର ବଦନ ଉଜ୍ଜ୍ୱଳ ,
ନବ ବିକଶିତ ଭାରତ କମଳ ,
ଭାରତ ଆକାଶେ ସୁଖେ ପରକାଶେ
ନବ ଅରବିନ୍ଦ ବନ୍ଧୁ ସୁବିମଳ
ଉପୁଜଇ ଆର୍ଯ୍ୟ ଦେହେ ନବବଳ । ୪୫ ।
ଉରୁପା * ଦଳନ ଦର୍ପୀ ନେପୋଲିୟନ,
ଦୁର୍ଦ୍ଦମ୍ୟ ଜଗତେ କାର୍ତ୍ତବୀର୍ଯ୍ୟ ପତି,
ଯାର ଭୁଜବଳେ, ନମ୍ର କଲେ ତଳେ,
ନିଜ ଶିର, ସେହି ବ୍ରିଟେନ ଈଶ୍ୱରୀ
ଆର୍ଯ୍ୟଙ୍କର ଆଜି ରାଜରାଜେଶ୍ୱରୀ । ୫୦ ।
ନବ ଇନ୍ଦ୍ର ପ୍ରସ୍ଥେ ନିଜ ରାଜସୂୟେ
ଉପସ୍ଥିତ ଆଜି ରାଜନ୍ୟ ମଣ୍ଡଳ
ରାଜେନ୍ଦ୍ର ଉଚିତ, ଭୂଷଣେ ଭୂଷିତ ।

---

* ଉରୁପା—ଇଉରୋପ ।

ଯୋଗ୍ୟ ଉପହାର ଅର୍ପନ୍ତୁ ସକଳ
ବନ୍ଦନ୍ତୁ ଈଶ୍ୱରୀ ଚରଣ ଯୁଗଳ । ୫୫ ।
ମହାରାଷ୍ଟ୍ର ଶୂର ବୀରେନ୍ଦ୍ର ସିନ୍ଧିଆ ,
ମହାରାଷ୍ଟ୍ର କୁଳ ଗୌରବ ଭାସ୍କର ,
ପୌଢ ହୁଲକାର , କିଶୋର ଗୁଇକାର ,
ଯବନ ନିଜାମ—ଦାକ୍ଷିଣାତ୍ୟେଶ୍ୱର ,
ଉଦେପୁର ପତି ରବିବଂଶଧର । ୬ ।
କାବେରୀ ମେଖଳ ଶ୍ରୀରଙ୍ଗପତ୍ତନ ,
ତୁଷାରକୁନ୍ତଳ ସୁରମ୍ୟ କାଶ୍ମୀର ,
ଷିଖପଞ୍ଚଅଲ , ଭୂଟାନ ନେପାଳ ,
ଏଅବ ଯେତେକ ଦେଶ ରାଜବୀର
ନତ ପଦେ ଆଜ ଭାରତେଶ୍ୱରୀର । ୬୫ ।
ନବ ଇନ୍ଦ୍ରପ୍ରସ୍ଥେ ନୂତନ କେତନ
ଉଡ଼େଇ ଅମ୍ବରେ , ବାଦ୍ୟନିଃସ୍ୱନ
ଶୁଭଇ ଗମ୍ଭୀର, ଯେହ୍ନେ ଯଦୁବୀର
ପାଞ୍ଚଜନ୍ୟ ନାଦ କରନ୍ତି ସଘନ ,
ଚକିତେ ଶୁଣନ୍ତି ନୃପ ଅଗଣନ । ୭୦ ।
ଏନବ ଘୋଷଣା ପ୍ରତିଧ୍ୱନି ଛଳେ
ଗାଇବେ ଭୀଷଣ ତୁଷାରଶିଖରୀ ,
ବନ୍ୟ ଧରାଧରେ , କନ୍ଦରେ କନ୍ଦରେ
ଉଠିବ ଏ ଧ୍ୱନି ଅମ୍ବରେ ସଞ୍ଚର ,
"ଜୟ୍ ଭିକ୍ଟୋରିଯ୍ୟା ରାଜରାଜେଶ୍ୱରୀ" । ୭୫ ।
"ଜୟ୍ ଭିକ୍ଟୋରିଯ୍ୟା ରାଜରାଜେଶ୍ୱରୀ"
ଉଲ୍ଲାସେ କଲ୍ଲୋଳେ ଗାଇବେ ସାଗର ,
ବେଳ ଉପକୂଳେ , ନୀଳ ଊର୍ମ୍ମି ଭୁଜେ
ଗାଇବେ ଗମ୍ଭୀରେ ମଳୟ ଭୂଧର ,

ତୂର୍ଯ୍ୟର ଶବଦେ ଗାଇବେ ନର୍ତ୍ତର ।୮୦।
"ଜୟ ଭିକ୍ଟୋରିୟା ରାଜରାଜେଶ୍ୱରୀ"
ଏ ଘୋଷଣା ଆଜ ବ୍ୟାପଇ ଉତ୍କଳ ,
ଗାଏ ମହାନଦୀ , ଗାଏ ମହୋଦଧି ,
ଗାଅନ୍ତି ହରଷେ ପ୍ରଗତ ଅଚଳ ,
ଗାଅନ୍ତି ଦକ୍ଷିଣେ ହ୍ରଦ ଊର୍ମ୍ମି ଦଳ ।୮୫।
କାଞ୍ଚନ ବିମାନେ ଗଗନେ ସଞ୍ଚର ,
କର ପୁଷ୍ପବୃଷ୍ଟି ସୁର ବିଦ୍ୟାଧର !
ଏକାମ୍ର କାନନେ , ଲତା ଦୋଳାସନେ ,
ଗାଅ ବନଦେବ ! କରେ ବୀଣାଧର ;
"ଜୟ ଭିକ୍ଟୋରିୟା ରାଜରାଜେଶ୍ୱରୀ"
"ଜୟ ଭିକ୍ଟୋରିୟା ରାଜରାଜେଶ୍ୱରୀ"
ପ୍ରତିଧ୍ୱନି ଛଳେ ଗାଉନ୍ତୁ ଦେଉଳ ;
ଖଣ୍ଡଗିରି ଦରୀ , ହ୍ରଦରେ ସଞ୍ଚର ,
କୁଞ୍ଜେ୨ ରବ ଉଠୁ ସୁମଙ୍ଗଳ ,
ମଧୁପ ଗୁଞ୍ଜିତେ ହେଉ ସେ ପୂରିଳ ।୯୫।
ଚନ୍ଦ୍ରଭାଗାଙ୍କରେ ସାଗର ସୈକତେ ,
ଚନ୍ଦ୍ରାଲୋକେ ସୁଖେ କର ଯେ ବିହାର ,
ଜଳ ଦେବୀକୁଳ ! ସର୍ବେ ହୋଇ ଠୁଳ ,
କର ଏ ଘୋଷଣା ସଙ୍ଗୀତେ ପ୍ରଚୁର ,
ତାଳେ ତାଳେ ହେଉ ଲହରୀ ପ୍ରହାର ।୧୦୦।
କର ଭାରତର ବାସନା ପୂରଣ
ପ୍ରଜାନୁରଞ୍ଜନ ଏଭିକ୍ଷା ଶ୍ରୀପଦେ
ଭାରତ ଭପନ , ପ୍ରସାଦ କରଣ
ପ୍ରଦାନୁ ଏ ମୃତ ଅର୍ଘ୍ୟ ମନଃପଦ୍ମେ
ଏହାତା ନବାଜୁ ଏଭାରତ ପଦ୍ମେ ।୧୦୫।

---

## ବେଣୀ ସଂହାର ।

ପ୍ରଭାତର ନଭସ୍ଥଳୀ, ହସିଲେ ଉଜ୍ଜ୍ୱଳେ
ପଙ୍କଜ ବରଣୀ ଉଷା ଉଦୟ ଅଚଳେ ,
ନବୋଦିତ ଦିନମଣି ଆରକ୍ତ କିରଣ
କାଞ୍ଚନ ଶିଖର ଚୂଡ଼ା ଚୁମ୍ବିଲା ବଦନ ;

ଝର ଝର ଝରେ କଣି ପତିତ ତୁଷାର ;
ଦୁଇ ଦଳେ ରଣସଜ୍ଜା କଲେ ଯେ ଯାହାର ,

ବାଜିଲା ବିବିଧ ବାଦ୍ୟ , ମତ୍ତ ବୀରରସେ ,
ଆୟୁଧ ଅଷ୍ଟାଳ ବୀରେ ଧାଇଲେ ସାହସେ ,

ବୀରମଧ୍ୟେ କେହି ବୀର କାର୍ମ୍ମୁକ ଟଙ୍କାରେ ,
କେଅବା ଆସ୍ଫାଳି ଅସି ଭୀଷଣ ହୁଙ୍କାରେ ,

ଦୋଳେ ଝଙ୍କ ଝଙ୍କି ପୃଷ୍ଠେ ଫଳକ ବର୍ତ୍ତୁଳ
କେ ଅବା ଉନ୍ମଦ ଶୂନ୍ୟେ ଘୂଣଇ ତ୍ରିଶୂଳ

ଶତ୍ରୁ ପ୍ରତିପକ୍ଷ ବକ୍ଷ ଲକ୍ଷି , କେହୁ ବୀର
ଧାଆନ୍ତେ କବଚେ ବାନ୍ଧି ବାଜଇ ତୂଣୀର ,

ଗମ୍ଭୀର ସମର ବାଦ୍ୟ , ଅସ୍ତ୍ରର ଝନ୍‌ଝନି ,
ସିଂହନାଦ ଶଙ୍ଖନାଦ ବ୍ୟାପଇ ଅବନୀ ।
ପ୍ରଚଣ୍ଡ ପାଣ୍ଡବ ଯୋଧେ ଆୟୁଧ ଭାସ୍ବର
ଧରି କ୍ରୋଧେ ମହାଯୁଦ୍ଧେ ଧାଇଲେ ସତ୍ବର ,
ଯେସନ ଭୀଷଣଘୋଷୀ ପଶ୍ଚିମ ଅନିଳ—

ଆଘାତେ ସଂଘାତେ ଧାଏ ତରଙ୍ଗ ଫେନିଳ

ଅଗେ ସିନ୍ଧୁ ନୀଳବକ୍ଷେ ଉଚ୍ଛୁଳି ଉଚ୍ଛ୍ୱାସେ ,

ହଲାଇ ଖେଳାଇ ଚୂଡ଼ା ଠେକଇ ଆକାଶେ ,

ଦମ୍ଭୋଳି ଆରବେ ପୁଣି ଗରଜି ଗମ୍ଭୀର ,

ସ୍ତରେ ସ୍ତରେ ତଟେ ଲାଗି ପିଠେ ତହୁଁ ଶିର ,

ଉତ୍ତୁଙ୍ଗ ମଳୟଗିର ଚରଣେ ଆଶ୍ରିତ
ଉଠଇ ଶିଖରକୁଳ କରେ କଳନାଦ ,
ଯେସନ ମୁଖର କ୍ଷେତ୍ର ଭୈରବ ଆରବେ
କ୍ଷତ୍ରିୟ ହର୍ଯ୍ୟକ୍ଷଶୂରେ ଧାଇଲେ ଆହବେ
ଦେବାକୃତ, ଶୂରବୃନ୍ଦ ସର୍ବେ ବୀର୍ଯ୍ୟଶାଳୀ
ଧର୍ମଙ୍କ ସମ୍ମୁଖୁ ପାର୍ଥ ଘେନିଣ ମେଲାଣି
କପିଧ୍ୱଜେ ବିଜେକଲେ ସଙ୍ଗେ ଚକ୍ରପାଣି !

ବିଶୋକ ସାରଥି ପ୍ରତି କହେ ଭୀମବୀର
"ରଖ ରଥେ ସୂତ ! ବହୁ ଖରଶାଣ ଶର ,
"ଅଦ୍ୟ ଧୃତରାଷ୍ଟ୍ର ହେବେ ପୁତ୍ର ପୌତ୍ରହୀନ ,
"ଅଦ୍ୟ ବସୁନ୍ଧରା ହେବ ଧର୍ମଙ୍କ ଅଧୀନ ,
"ଅଦ୍ୟ ଦୁର୍ଯ୍ୟୋଧନ ରାଜା ଶୋଇବେ ଭୂତଳ
କପଟ ପାଶାର ଅଦ୍ୟ ଦେବ ପ୍ରତିଫଳ ,
ଯାବତ ନ ମିଳେ ଆସି ପାର୍ଥ ମହାରଥୀ,
"ଚଳନ୍ତୁ ମୋ ରଥ ବେଗେ କର ତୁ ସାରଥି !

ଏ ସମୟେ ଉତ୍ତରେ ଶୁଭିଲା କୋଳାହଳ ;
ଆବରେ ଅର୍ଜୁନ ବାଣ ଗଗନ ମଣ୍ଡଳ ,
କପିଧ୍ୱଜ ଅଶ୍ୱହ୍ରେଷା, ଦେବଦତ୍ତ ସ୍ୱନ
ଶୁଭିଲା ହସିଲା ହୃଦେ ବାନର କେତନ ;
ଦୁଇବଳେ ମହାବେଗେ ମିଳିଲେ ସମରେ
ଘନଘନ ଶରକୁଳ ଛାଇଲା ଅମ୍ବରେ ,
ଖଡ୍‌ଗେ ଖଡ୍‌ଗ ବାଜେ ଫଳକେ ଫଳକ ,
ଶୂଳେଶୂଳ , ଭଲ୍ଲେଭଲ୍ଲ , ସାୟକେ ସାୟକ
ଆର୍ତ୍ତନାଦ ସିଂହନାଦ ଉଠଇ ଅମ୍ବରେ ,
ଯାଉଛି ଅହର ପରେ ନାକେ ଦମ୍ଭରେ ,

ଘୋଟକ ଖୁରପୁଟ ଧୂଳି ଘୋଟେ ନଭସ୍ଥଳ ,
ଘର୍ଘର ଘୂରଇ ଚକ୍ର ଉଗାଳ ଅନଳ ,
ଭୁଗ୍ନି ଭେରୀ ଆଦି ବାଦ୍ୟ ବାଜେ ଅଗଣନ
ଘନଘଟା ଘୋରଧ୍ୱନି ବଧିର ଶ୍ରବଣ ,
ପଡ଼ିଲେ ଝଟାଝଟୀ ଶରେ କୁରୁ ଚତୁରଙ୍ଗ ,
ଭୟେ କୁରୁବୀର ବୃନ୍ଦ ରଣେ ଦେଲେ ଭଙ୍ଗ,
ଦେଖିଣ ସୌବଳ କହେ ରାଜାଙ୍କୁ ସତ୍ୱର
"ଦେଖ ରାଏ ! ସୈନ୍ୟ କ୍ଷୟ କଲା ପାର୍ଥ ଶର
"ମୁଁ ଯାଇ କରିବ ଅଗ୍ରେ ଭୀମଙ୍କ ସଂହାର
ନୋହିଲେ କୁରୁଙ୍କ ଆଜି ନାହିଁ ଯେ ନିସ୍ତାର
ମହାବଳ ସୌବଳ ଧାଇଲେ ଭୀମ ପ୍ରତି
ଯୁଝନ୍ତି କେଶରୀ ପ୍ରାୟେ ବେନି ସେନାପତି ,
ପ୍ରହାରଇ ଶକ୍ତି ଭୀମ ସଉବଳ ମାଥେ ,
ହୁଙ୍କୁଡ଼ି ସେ ଶକ୍ତି ବୀର ନେଲା ବାମହାତେ
ସେହି ଶକ୍ତି ପେଳ ପୁଣି ଭୀମଙ୍କୁ ପ୍ରହାରେ ,
ମୂର୍ଚ୍ଛିତ ହୋଇଣ ଭୀମ ପଡ଼ିଲେ ଧରାରେ ,
ମୂର୍ଚ୍ଛାଭଙ୍ଗେ ରଣ ରଙ୍ଗେ ମାତିଲେ ମାରୁତି
ବାଣେ କୁରୁବୀରଙ୍କୁ ସେ ପକାଇଲେ ପୋତି
କ୍ରୋଧାନ୍ଧ ବହିଲା ବୀର ସୌବଳ ଶରୀର ,
ଭେଦିଲା ସୌବଳ କଣ୍ଠମୂଳେ ଭୀମ ଶର ,
ମୂର୍ଚ୍ଛିତ ହୋଇଣ ବୀର ହେଲା ରଥଶାୟୀ
ବେଗେଣ ସାରଥି ରଥ ନେଲା ବାହୁଡ଼ାଇ
ଧନୁ ଏଡ଼ି ଗଦା ନେଲେ ପବନ କୁମର ,
ଗଦାଘାତେ ଅରିଗଣଙ୍କୁ କଲେ ସେ ଜର୍ଜ୍ଜର ,
ଧୂମକେତୁ ଭୀମ ପୁଚ୍ଛ ସଙ୍କୁଳ ବଦନ ,

ନିଶୀଥେ ଆକାଶେ ଥାଇ ଦିଶଇ ଯେସନ
ଦୁର୍ଭିକ୍ଷ ମଡ଼କ ସଙ୍କେତ , ସୁବର୍ଣ୍ଣ ମଣ୍ଡିତ
ପ୍ରଚଣ୍ଡ ଅଗ୍ନ୍ୟସ୍ତ୍ର ଗଦା ବୁଲାଇ ଦୁରନ୍ତ
ଦର୍ଶକଙ୍କୁ ତେସନ ପ୍ରେରଇ ପ୍ରେତପୁର
କୁରୁକୁଳ ଧୂମକେତୁ ଭୀମ ମହାଶୂର ;
ମାତଙ୍ଗେ ମାହୁନ୍ତ ପଡ଼େ , ତୁରଙ୍ଗେ ନୃଜନ
ପଡ଼ନ୍ତି ପଦାତି ରଣେ ଅଯୁତ ଅଯୁତ ।

ବେଗେ କୁରୁବଳେ ଗଲେ କର୍ଣ୍ଣଙ୍କ ଶରଣ
କର୍ଣ୍ଣଙ୍କ ନିକଟେ କହେ ରାଜା ଦୁର୍ଯ୍ୟୋଧନ
ଦେଖ ଅଙ୍ଗରାଜେ ! ବେଗେ ଆସେ ପାର୍ଥବୀର
"ସୁରାସୁର ଯୁଦ୍ଧେ ଯାର ନିର୍ଭୟ ଶରୀର ,
"ତୂଳାରାଶି ମହାବାତେ ଉଡ଼ଇ ଯେସନ ,
ତେସନ ପଳାନ୍ତି ଦେଖ କୁରୁ ସୈନ୍ୟଗଣ ;
"ତୁମ୍ଭେ ସାହା ଥାଉଁ ସଖା ଘଟେ ଏ ଦୁର୍ଗତି !
ଶୁଣିଣ ରୁଷିଲା ବୀର କର୍ଣ୍ଣ ମହାମତି ,
ଶଲ୍ୟଙ୍କୁ ଆଦେଶେ ବୀର "ବେଗେ ନିଅ ରଥ
ଆଜି ନଷ୍ଟ ପାର୍ଥକୁ କରିବ ରଣେ ହତ ,"
ଅଶ୍ୱଙ୍କୁ ସାରଥି କଲେ ଛୁଟିଣି ପ୍ରହାର ;
ଗଲା ଗଜଧ୍ୱଜ ବେଗେ ନକ୍ଷତ୍ର ଆକାର ,
ହ୍ରେଷାରବେ ଦ୍ରୁତଗତି ଧାଇଁଲେ ଘୋଟକ ।
ପର୍ବତ ଧୂମଇ ତହ୍ନେ ଉଗାର ପାବକ ,
ମହାବୀର୍ଯ୍ୟବନ୍ତ ବୀର ସୂର୍ଯ୍ୟଙ୍କ କୁମର ,
ଧୈର୍ଯ୍ୟ ବୀର୍ଯ୍ୟ ମହତ୍ତ୍ୱେ ନାହିଁ ପଟାନ୍ତର ,
ଗହନ କମ୍ପିଲେ ଯେହ୍ନେ ଅନଳ ହୁଙ୍କାର ,
ତେସନେ ପାଣ୍ଡବ ବଳ କଲା ଛାରଖାର ,

ମସ୍ତକେ ଉଜ୍ଜ୍ୱଳ ଶୋଭେ ସୁବର୍ଣ୍ଣ ମୁକୁଟ ;
ମେରୁ ମହୀଧରେ ଯେହ୍ନେ ଶୋଭେ ହେମକୂଟ ;
କପିଧ୍ୱଜ ରଥେ ବସେ ବୀର ଚୂଡ଼ାମଣି ,
କୋଦଣ୍ଡ ଟଙ୍କାରେ ମୁହୁ କମ୍ପଇ ଅବନୀ ,
ଶ୍ରବଣେ କୁଣ୍ଡଳ ଦୋଳେ , ଶରଦେ ଯେମନ୍ତ

ପ୍ରାଚୀମୂଳେ ହସାଅନ୍ତେ ତାରା ଦୀପ୍ତିମନ୍ତ ,
ଯେବେ ମନ୍ଦାଦଧି ଜଳେ ଦେହ ଅବଗାହ ,

ହସେ ପ୍ରାଚୀଶିରେ ଧନୀ ଉଷାଙ୍କୁ ଅନାଇ ,
ସଦ୍ୟ ସିନ୍ଧୁ ସ୍ନାନେ ଭାନୁ ଦ୍ୱିଗୁଣ ଝଟକେ ,
ଶିରୋମଣି ରୂପେରାଜେ ରଜନୀ ଅଳକେ ,
ଦୈତ୍ୟ ଯୁଦ୍ଧେ ଚଣ୍ଡତେଜା ଶିଖଣ୍ଡି ବାହାନ ,

ନର୍ତ୍ତିତ ବସିଠ ଦେବ କାର୍ତ୍ତିକ ଯେସନ ,
କୌରବ ଗୌରବ ରବି ରବିଙ୍କ ନନ୍ଦନ ,

କୁରୁଯୁଦ୍ଧେ ଧନୁର୍ଦ୍ଧର ଦୁର୍ଦ୍ଧର୍ଷ ତେସନ ,
କର୍ଣ୍ଣେ ଦେଖି କୁରୁବଳ କଲେ ସିଂହନାଦ ,

ଅନେକେ ପାଣ୍ଡବ ବଳ ଗଣିଲେ ପ୍ରମାଦ .
କର୍ଣ୍ଣେ ଦେଖି ଭୀମସେନ ହେଲେ ଅଗ୍ରସର ,

ବେଗେଣ ବର୍ଷଇ ବୀର ଖରଧାର ଶର ,
ଭୀମଙ୍କ ସହାୟ ହେଲେ ପାଣ୍ଡୁ ଯୋଧଗଣ ,

ସହଦେବ, ଧୃଷ୍ଟଦ୍ୟୁମ୍ନ, ଦ୍ରୁପଦ ନନ୍ଦନ
ଶିଖଣ୍ଡି ନକୁଳ ଆଦି ମିଳିଲେ ସତ୍ୱର ,
ସମସ୍ତଙ୍କୁ ନିବାରିଲା କର୍ଣ୍ଣ ଏକେଶ୍ୱର * ,

ଦେନ ଶରେ ନକୁଳଙ୍କୁ କଲା ଅଚେତନ ,
କଟାକ୍ଷେ ଛେଦିଲା ସହଦେବ ଶରାସନ .

---

* ସାହାଯ୍ୟ ନିରପେକ୍ଷ ।

ଶୂରବାଣେ ଧୃଷ୍ଟଦ୍ୟୁମ୍ନ ହୋଇଲେ ବିରଥ ,
ହେଲେ ସଂହାରିତ ପାଣ୍ଡୁ ସୈନ୍ୟ ଶତ ଶତ ,
ଏକ ଶରେ ଭୀମର କାଟିଲ ଧନୁର୍ଗୁଣ ,
ସୈନ୍ୟଭଙ୍ଗ ଦେଖି ଦୂରେ ଗର୍ଜିଲେ ଅର୍ଜୁନ
ସଂଶପ୍ତକ ରଣେ ରତ ପାର୍ଥ ଧନୁର୍ଦ୍ଧର ,
ଏଣେ ଆସିବାକୁ ତିଳେ ନାହିଁ ଅବସର ,
ସଂଶପ୍ତକ ସେନାପତି କୃପ ମହାଶୟ
ଯୁଝନ୍ତି ଅର୍ଜୁନ ସଙ୍ଗେ ନିର୍ଭୟ ହୃଦୟ ,
ମହାରୋଷେ ହାଣେ ବାଣ ପାର୍ଥ ମହାଶୂର ,
ଶତ ଶତ ସଂଶପ୍ତକ ଗଲେ ପ୍ରେତପୁର ,
କୃପଙ୍କୁ ହାଣିଲେ ବକ୍ଷେ ତୀକ୍ଷ୍ଣତର ଶରେ ,
ଶୋଣିତ ଉଗାରେ କୃପ ପଡ଼ି ରଥପରେ ,
କଟାକ୍ଷେ ପୂର୍ଣ୍ଣଶ୍ରୀକାନ୍ତ ହେଲେ କପିଧ୍ୱଜ ,
ଯୁଝଇ ଦୁର୍ଦ୍ଧର୍ଷ ଯହିଁ ଭାସ୍କର ଆତ୍ମଜ ,
କର୍ଣ୍ଣଙ୍କୁ ଦେଖିଣ ଗର୍ଜ୍ଜେ ପାର୍ଥ ବୀରମଣି ,
ପକ୍ଷୀନ୍ଦ୍ର ଗରୁଡ଼ ଯେହ୍ନେ ଦେଖି ଭକ୍ଷ ଫଣୀ ,
କର୍ଣ୍ଣାର୍ଜୁନ ମହାରଣ ନାହିଁ ପଟାନ୍ତର ,
ଅନ୍ତରୀକ୍ଷେ କୁତୂହଳେ ଦେଖନ୍ତି ଅମର ,
କଳିଙ୍ଗ ସଙ୍ଗତେ ଯୁଝେ ଦ୍ରୁପଦ କୁମର ,
ଉଭୟେ ଯୁଝନ୍ତି ଯେହ୍ନେ ମତ୍ତ କରିବର ,
ଧୃଷ୍ଟଦ୍ୟୁମ୍ନ ବିଶିଖେ କଳିଙ୍ଗ ହେଲେ ନାଶ ,
ନିବାସି ହେବାକୁ ଗଲେ ଶମନ ସକାଶ ,
ମହୋଦଧି ତୀରେ ରମ୍ୟ ପ୍ରାସାଦେ ଯେ ଥିଲେ ,
ରଣ-ନିମନ୍ତ୍ରଣ ପାଏ କୁକ୍ଷଣେ ଯେ ନେଲେ ,
ସିନ୍ଧୁ-ବାୟୁ-ବିଧୂନିତ ରମ୍ୟ ଉପବନ ,

ସୁରମ୍ୟ ରମଣୀ ଛାଡ଼ି କଲେ ଆଗମନ ।
ଆସିଥିଲେ ବୀରପଣ ଦେଖାଇବା ଆଶେ ,
କୁରୁକ୍ଷେତ୍ରେ ପଡ଼ିଲେ ସେ ଶୋମସ୍ତୁ ପଚ୍ଛେସେ !
କର୍ଣ୍ଣ ଦେଖି କୃତବର୍ମା ସଙ୍ଗେ ଯୁଦ୍ଧେ ଭୀମ
ପ୍ରତାପେ ଅନନ୍ତ ସମ ରଣେ ଅପ୍ରତିମ ,
କୃତବର୍ମା ସହାୟ ହୋଇଲେ ଦୁର୍ଯ୍ୟୋଧନ ,
ଉଗ୍ରାୟୁଧ ; ଦୁଃଶାସନ ବୀର ବିବେଚନ
ସମସ୍ତଙ୍କୁ ନବାରଇ ଭୀମ ଅବହେଳେ ,
ମତ୍ତ ମତଙ୍ଗଜ ଯେହ୍ନେ ନଳବନେ ଖେଳେ
ଗଦାଘାତେ ଦୁର୍ଯ୍ୟୋଧନ ରଥ ହେଲା ଚୂର୍ଣ୍ଣ ,
ଶୋଣିତେ ସମରସ୍ଥଳୀ ହେଲା ସେ ପିଶୁନ ,
ସାରଥି ସହିତେ କୃତବର୍ମା ରଥ ହତ ,
ଉଗ୍ରାୟୁଧ ବିବେଚନ ଗଲେ ଯମାଳୟ ,
ରଥୁଁ ଖସି ବେନିଭାଇ ପଡ଼ିଲେ ଧରଣିରେ ,
ପୁଷ୍ପିତ ଶାଲ୍ମଳୀ ଯେହ୍ନେ ପଡ଼ଇ କାନ୍ତାରେ
ଚଡ଼ ଚଡ଼ ଚକଡ଼ ଯେବେ ପଡ଼ଇ ଚଡ଼କ ,
ଚମକାଇ ବିଶ୍ୱବାସି-ହୃଦୟେ ଦମକ ;
ପତନେ କବଚ ଗାତ୍ରେ ବାଜଇ ଝନ ଝନ ,
ଇଷ୍ଟଦେବ ଦୁରୁ ଦୂରେ ମୁଦିଲେ ନୟନ ,
ବଡ଼ ପ୍ରିୟ ବେନି ଏହୁ ଥିଲେଟି ରାଜାର ,
ଦୁରନ୍ତ କୃତାନ୍ତ କିଛି ନ କଲା ବିଚାର ,
କୋମଳ ଶୟନେ ଯେଉଁ ନିତ୍ୟ ଶୋଉଥିଲେ
କୁରୁକ୍ଷେତ୍ରେ ଏବେ ମହାନିଦ୍ରାକୁ ଭଜିଲେ ,
ଭ୍ରାତୃଶୋକେ ଦୁଃଶାସନ ନେତ୍ରୁ ଜଳ ଝରେ
ମହାକ୍ରୋଧେ ଅଗ୍ରସର ହେଲେ ସେ ସମରେ

ଦେଖି କ୍ଷେତ୍ରେ କ୍ଷେତ୍ରଭ୍ରଷ୍ଟ ଦୁଷ୍ଟ ଦୁଃଶାସନ ,
ବଜ୍ରନାଦେ ଗର୍ଜ୍ଜି ଭୀମ ଧାଇଲେ ତକ୍ଷଣ ।
ରୌଦ୍ରରୂପି , ମହାବୀର ଧାଇଲେ ସବେଗେ ,
ବାଜଇ ଉରୁରେ ଅସି ଗୁରୁ ଅସି କୋଷେ ,
ଏତେ ବଚନେ " କହେ ଭୀମ ଗର୍ଜ୍ଜିଣ ନିର୍ଘାତେ ,
"ଏତେ ଦିନେ ଆରେ ଦୁଷ୍ଟ ! ପଡ଼ିଲୁ ମୋ ହାତେ ,
"କ୍ଷେତ୍ରକୁଳ କୁଳାଙ୍ଗାର ଆରେରେ ନିର୍ବୋଧ !
"ପୂର୍ବ ଋଣ ଆଜିରେ କରିବି ପରିଶୋଧ । "

ପ୍ରଚଣ୍ଡ ଅପୂର୍ବ ଗଦା ଆସ୍ଫାଳି ଭୀଷଣେ
ଧାଏ ଭୀମ ; ଧକଧକେ ଅନଳ ଲୋଚନେ ,
ତ୍ରାସେ ଦୁଃଶାସନ ବୀର ବେଗେ କ୍ଷେପେ ଶର ,
ନିବାରେ ତୁଳଇ ଗଦା ଭୀମ ଗଦାଧର ,
ତ୍ରସ୍ତେ ବ୍ୟସ୍ତେ ଦୁଃଶାସନ ଅନ୍ୟ ଅସ୍ତ୍ର ମାରେ ,
ସେହିରୂପେ ବୃକୋଦର ସେ ଅସ୍ତ୍ର ନିବାରେ ,
ଗଦାଘାତେ ଦୁଃଶାସନ ରଥ ଭୀମ ନାଶେ ,
ଲମ୍ଫ ଏଡ଼ି ଦୁଃଶାସନ ପଳାନ୍ତି ତରାସେ

ଅନ୍ତରୀକ୍ଷେ କପୋତକୁ ଦେଖିଣ ସଞ୍ଚାଣ ,
ବଜ୍ରନଖ ଧାଏ ଯେହ୍ନେ ବିଜୁଳି ସମାନ ,
ଇତର ପକ୍ଷୀଏ କରୁଥାନ୍ତି କୋଳାହଳ ,
ଏଣେ ତେଣେ ନିଜ ପ୍ରାଣ ଆତଙ୍କେ ବିକଳ .
କପୋତ ସଞ୍ଚାଣ ମୁଖ ଏଡ଼ାଇବା ଆଶେ ,
ଆତଙ୍କେ ବିବିଧ ଭଙ୍ଗେ ଉଡ଼ଇ ଆକାଶେ ,
କ୍ଷଣେ ଉଠେ, କ୍ଷଣେ ପଡ଼େ କ୍ଷଣେ ଉଲଟଇ ,
ବହୁ ଦୂର ଯାଇ ପୁଣି ଫେରେ ଲେଉଟଇ ,
ଅନ୍ତରୀକ୍ଷେ ବ୍ୟଗ୍ରନେତ୍ରେ ଅଣ୍ଡା ଗୋଡ଼ୁଥାଏ ,

ଜୀବନ ଥକଲେ ମୃତ୍ୟୁ ସଖ୍ୟାଣକୁ ଗହେଁ .
ତେସନେ ପଳାଏ ରଣେ ଦୁଷ୍ଟ ଦୁଃଶାସନ ,
କ୍ଷଣେ ଉଠେ, କ୍ଷଣେ ଧାଏ, ଭୟେ ଝଗ୍ହଟନ ,
ଆକୁଳେ କୌରବ ଦଳ କଲେ ହାହାକାର ,
ଧାଏ ଭୀମସେନ ବେଗେ ନକ୍ଷତ୍ର ଆକାର ,
କାଞ୍ଚନ କିରୀଟ ଚୂଡ଼ା ଦୋଳଇ ମସ୍ତକେ ,
କାଞ୍ଚନ କଞ୍ଚୁକ ଦେହେ ଉଜ୍ଜ୍ୱଳ ଝଟକେ ,
କଣ୍ଠାଗ୍ରେ ଧଇଲା ଯାଇ ଦୁଃଶାସନ ବାଳ ;
ଗର୍ଜ୍ଜଇ ବଜ୍ରମେ ମୁଖ କରି ବିକଟାଳ ;
ଥରକେ କମ୍ପଇ ମୂର୍ଚ୍ଛୁ ଦୁଃଶାସନ ଅଙ୍ଗ ,
କେଶରୀ କବଳେ ଯେହ୍ନେ ପଡ଼ିଲା କୁରଙ୍ଗ,
କହେ ଦୁଃଶାସନ ବୀର ବିନୟ ବଚନ ,
"ଅହେ ବୀରମଣି ରଖ ରଖ ଏ ଜୀବନ ,
"ପଳାୟିକ ଅଟଇ ମୁଁ ନିରସ୍ତ୍ର ଆବର ,
"ବୀରଧର୍ମ୍ମ ଅବଧତ ନୁହଇ ଛମ୍ଭର ।"
କହେ ଭୀମ ଭୀମବାହୁ "ଅରେରେ ପାମର !
"କପଟେ ପଣ୍ଡିତ ଏବେ ଧର୍ମ୍ମକୁ ସୁମର ,
କାହିଁ ଥିଲା ଧର୍ମ୍ମରେ କପଟପାଶା ବେଳେ ?
"କୃଷ୍ଣାକୁ ବିବସ୍ତ୍ର ଯେବେ କଲୁ ଅବହେଳେ ।
"ଅଧର୍ମ୍ମୀ ସଙ୍ଗତେ ଧର୍ମ୍ମ ନୁହେ ପାଳିବାର ,
"କପଟୀ ସଙ୍ଗତେ ଯୁକ୍ତ କପଟ ବେଭାର ,
"ମୃଗ ସଙ୍ଗେ ଯେଉଁ ଧର୍ମ୍ମ ଆଚରେ ଶାର୍ଦ୍ଦୂଳ ,
"ଭେକ ସଙ୍ଗେ ଭୁଜଙ୍ଗମ, ଭୁଜଙ୍ଗେ ନକୁଳ,
କରୀ ସଙ୍ଗେ ଯେଉଁ ଧର୍ମ୍ମ ଆଚରେ କେଶରୀ ,
"ଶତ୍ରୁ ସଙ୍ଗେ ଶତ୍ରୁ ପଣେ ସେହି ଧର୍ମ୍ମ ଧରି ।
"ନୁହଇ ମୁଁ କାପୁରୁଷ, ଅସ୍ତ୍ର ନ ଧରିବି,

"ହନା ଅସ୍ତ୍ରେ ପାମର ! ତୋ ପରାଣ ହରିବ ,
"ବାନ୍ଧ ତୁ ସାହସ ହୃଦେ ଅରେ ଦୁରାଶୟ !
"ଏ କାଳେ ସାହସ ତୋର ଲୋଡ଼ା ଅତିଶୟ"
ଏହା ବୋଲି ଗଦା ଫିଙ୍ଗି ଦେଲା ବୃକୋଦର ,
ନିରକ୍ଷେ ସାହସ ଦୁଃଶା ବାନ୍ଧିଲା ମନର ,
ମହାବଳେ ଭୀମଙ୍କୁ ସେ ଧରିଲା ଆକଟି ,
ବେନିଭୁଜେ ଭିଡ଼ି ଧରେ ବୃକୋଦର କଟି ,
ପଡ଼ିଲେ ଭୂତଳେ ଭୀମ ଗର୍ଜି ଭୀମନାଦେ ,
ମାଡ଼ି ବସି ଦୁଃଶାସନ ବୈରଶୋଧ ସାଧେ ,
ନିର୍ଘାତେ ପ୍ରହାରେ ମୁଷ୍ଟି ଭୀମଙ୍କ ମସ୍ତକେ
କୁରୁବଳ ସାଧୁବାଦ ଦେଲେ ସେ ପୁଲକେ ।
ଭୟେ ପାଣ୍ଡୁ ବଳେ ପଡ଼ିଗଲା ହାହାକାର ,
ଆକୁଳ ନକୁଳ ନେତ୍ରୁ ବରଷେ ଆସାର ,
ଆକୁଳ ଅର୍ଜୁନ ନେତ୍ରୁ ଝରେ ଅଶ୍ରୁଜଳ ,
ବିକଳେ ପାଣ୍ଡବଦଳ କାନ୍ଦିଲେ ସକଳ ,
ଶ୍ରୀଭୁଜେ ବାନରଧ୍ୱଜେ ପୋଛୁ ଅଶ୍ରୁନୀର ,
କାନ୍ଦନ୍ତି ନିରବେ ବସି ପ୍ରଭୁ ଯଦୁବୀର ,
ଯେସନ ବରଷାଗମେ ମାନସରୋବର—
ଅସଂଖ୍ୟ ମରାଳ ରବେ, ହୁଅଇ ମୁଖର
ତେସନ ମୁଖର ନେତ୍ର ଦୁଃଖ କଳରବେ ,
ସୋଦର ବିପଦ ଦେଖି କାନ୍ଦିଲେ ପାଣ୍ଡବେ ,
ମହାବୀର ସହଦେବ ବଦନ ସହାସ ,
ବିସ୍ମୟେ ପୁଚ୍ଛନ୍ତି ତାଙ୍କୁ ପ୍ରଭୁ ଶ୍ରୀନିବାସ ,
"କହ ବୀର କିପାଁ ତୋର ହରଷ ବଦନ ?
ଅଗ୍ରଜ ବିପଦେ ହର୍ଷ ନୁହଇ ଶୋଭନ"

ଶୁଣି ବାସୁଦେବ ବାଣୀ କହେ ମାଦ୍ରୀସୁତ
"କାହିଁକି କାତର ଏଡ଼େ ହୁଅ ତୁ ଅଚ୍ୟୁତ ?
"ଅଥବା ନଜାଣୁ ନାଥ ଜଗତର ସ୍ୱାମୀ ,
"ଜାଣୁ ଜାଣୁ କାହୁଁ ନାଥ ଅଛୁ ଅନ୍ତର୍ଯ୍ୟାମୀ
"ବାଲ୍ୟେ ଲଭିଥିଲେ ଭୀମ ଶତଶୃଙ୍ଗ ଶାପ
"ତହୁଁ ଅଦ୍ୟ ରଣେ ପାଉଛନ୍ତି ମନସ୍ତାପ ,
"ତୁନାଥ ଭୀମଙ୍କୁ ବେଗେ କରାଅ ଚେତନ ,
"ଶତଶୃଙ୍ଗ ଚରିତ୍ରୁ ସେ କରନ୍ତୁ ସ୍ମରଣ ,
"କାହିଁ ଭୀମ ରଣସିନ୍ଧୁ କାହିଁ ଦୁଃଶାସନ !
"ଶାପ ଯୋଗୁଁ ଉପୁଜିଲା ଦୁର୍ଗତି ଏସନ"

ପାଞ୍ଚଜନ୍ୟ ଶଙ୍ଖନାଦ କଲେ ନାରାୟଣ ,
ନିଜ ତେଜ ଭୀମଙ୍କୁ ସେ ଦେଲେ ସେହିକ୍ଷଣ
"ଶତଶୃଙ୍ଗ" "ଶତଶୃଙ୍ଗ" ଘୋଷେ ଶଙ୍ଖବର ,
ପଶିଲା ଶବଦ ଯାଇ ଭୀମଙ୍କ କର୍ଣ୍ଣର ,
ଚେତନା ଲଭିଣ ବୀର କଟାକ୍ଷେ ଉଠିଲା ,
ଲେଉଟାଇ ଦୁଃଶାକୁ ସେ ମାଡ଼ିଣ ବସିଲା
ରଣଭଙ୍ଗେ ସିଂହ ସମ ଅଟେ ବାୟୁ ସୁତ ,
ମହା ବୀର୍ଯ୍ୟବନ୍ତ ସେ ତ୍ରି ବିକ୍ରମେ ଅଦ୍ଭୁତ
ମହା ବସ୍ତୁ ତେଜେ ବୀର ତେଜସ୍ୱୀ ଆବର ,
ହେଲା ସେ ବିରାଟ ମୂର୍ତ୍ତି ମହାଭୟଙ୍କର ,
ମହା ଶବ୍ଦେ ଛୁଟିଲେ ପଡ଼ିଲା ଦୁଃଶାସନ ,
ବଜ୍ରାଘାତେ ଶାଳତରୁ ପଡ଼ଇ ଯେସନ
ବନ୍ଧ୍ୟାଚଳ ଭୃଙ୍ଗଶୃଙ୍ଗେ, କୁରୁପାଣ୍ଡୁ ବଳ
ଆତଙ୍କେ ଅବଶ ଚକ୍ଷୁ ବୁଜିଲେ ସକଳ
ପର୍ବତ ଆକାରେ ପଡ଼ିଅଛି ଦୁଃଶାସନ ,

ବସିଅଛୁ ତା ଉପରେ ପବନ ନନ୍ଦନ .
ଭୟଙ୍କର ହୁଙ୍କାରେ ଅଧରେ ଦନ୍ତ ଚାପି ,
ଟେରେଇବାର କରଣ ଗର୍ଜ୍ଜଇ କାଳରୂପୀ ,
ଗଗନ ମାର୍ଗକୁ ତୋଳୁ ଅଛୁ ବଜ୍ରମୁଷ୍ଟି ,
କିଅବା ମନ୍ଦର ଗିରି ପଡ଼ୁ ଅଛି ଛୁଟି ,
କାଳଚକ୍ର ପ୍ରାଏକ ବୋଲାଇ ବେନି ଭୋଳା ,
ଚରଣେ ଚାପଇ ଭୀମ ଦୁଃଶାସନ ଗଳା ,
"ଅରେ ଅରେ ଦୁଃଶାସନ ଦୁରନ୍ତ କୌରବ ,
"ଏବେ ତୋ ଗରବ ରଣେ ହେଲା ପରାଭବ !
"ଶତ ପୁତ୍ର ଜାତ କଲା ତୋହର ଜନନୀ ,
"ସମସ୍ତେ ମୋ ଅସ୍ତ୍ରାଘାତେ ଶୋଇବେ ଅବନୀ
"ଧାତାର ଲେଖନ ଏହୁ କେ କରିବ ଆନ ?
"ଅରେ ଦୁଷ୍ଟ ଆଜି ତୋର ନାହିଁ ପରିତ୍ରାଣ ,
"କାଲରେ ସମରେ ପଳାଇଲୁ ମୋ ଆଗରୁ ,
"ଆଜରେ ପାଇଲି ଭେଟ ଦଇବ ଯୋଗରୁ ,
"ଅରେ ମୂର୍ଖ ! ଆଜ ତୋତେ କରଣ ସଂହାର ,
"କରିବ ଦ୍ରୌପଦୀ-ଚିର-ଦୁଃଖ ଆଜ ପାର ,
"ଅରେ ଦୁଷ୍ଟ ! କେ ରଖିବ ତୋତେ ରବିତଳେ ?
"ଦୁରନ୍ତ ପଡ଼ିଲୁ ନଷ୍ଟେ କୃତାନ୍ତ କବଳେ"
ତରାଟି ଚାହିଁଲା ଭୀମ ବିରାଟ ମୂରତି ,
ତରାଟି ଚାହିଁଲା ଦେଖେ ଅନ୍ତରୀକ୍ଷ ପ୍ରାନ୍ତ ,
ଗର୍ଜ୍ଜିଣ କହିଲା "ଅହେ ଅହେ ସୁରଗଣ !
ଅହେ ସୁରନାଥ ଇନ୍ଦ୍ର ଶୈଳ-ବିଦାରଣ !
"ପବନ, ତପନ, ଯମ, ବ୍ରହ୍ମା ଆଦି କରି ,
"ମିଳି ଏ ସମସ୍ତେ ଆସ କରେ ଶସ୍ତ୍ର ଧରି ,

"ଆସ ଦେଖ ରଖିବ ରଣ କୌରବ ପାମର ,
"ଆସ ଆସ ବେଗ କର ବିଳମ୍ବ ନ କର"

ଭୀମର ଭୀଷଣ ବାଣୀ ଶୁଣି ସୁରଗଣେ
ହାସିଲେ ଦାନବ ତ୍ରାସ ବାସବ ଆପଣେ ।

ଥରହର କମ୍ପିଲା ସୁବର୍ଣ୍ଣ-ନିକେତନ
ମଣିଚୂଡ଼, ଥରହର କମ୍ପିଲା ଆସନ ,
ମହା ପ୍ରଳୟେ ଯେସନ ପ୍ରଭୁ ଦିଗମ୍ବର—
—ଭୀଷଣ ବିଷାଣ ନାଦେ କମ୍ପେ ଥରହର
ଛନ୍ଦପୁର, ଭୀମସେନ ଭୟଙ୍କର ନାଦ
ଶୁଣି ନରବର ଜନେ ଗଣିଲେ ପ୍ରମାଦ ।
ମହାଭୟେ ପାଣ୍ଡୁ-ଗଣ୍ଡ ହେଲେ ଆଖଣ୍ଡଳ ,
ମହାଭୟେ ପାଣ୍ଡୁ-ଗଣ୍ଡ ହେଲେ ଦେବଦଳ ,
କେହି ଅଗ୍ରସର ଯହୁଁ ନ ହେଲେ ତରାସେ ,
ଦୁଃଶାସନ ଗୃହ୍ଣି ଭୀମ କହନ୍ତି ସାହସେ ,
ଦେ ବିକଟ ହାସ୍ୟ ଦେଖି ଡରିଲା ସଂସାର !
ଗର୍ଜ୍ଜିଣ କହନ୍ତି ଭୀମ ଅରେ "କୁଳାଙ୍ଗାର !
"ଅରେ ଦୁଃଶାସନ କେହି ରଖି ନ ପାରିଲେ !"
ପଞ୍ଚାଳପୁରକୁ ଭୀମ ପୁଣି ସେ ଗୃହ୍ଣିଲେ ,
"ଆହେ ନାଗଲୋକ ହେ ଅନନ୍ତ ଧରାଧର !
"ଧରଣୀ ଧାରଣ ତୁମ୍ଭେ କର ମସ୍ତକର ,
"ସପ୍ତଲୋକେ ଶ୍ରେଷ୍ଠ ଅଟ ତୁମ୍ଭେ ନାଗେଶ୍ୱର !
"ପାରିଲେ ରଖ ଦେଖ ଆସି କୌରବ ପାମର"
କାମରୂପୀ ବୃକୋଦର ଗୃହ୍ଣିନ୍ତେ ବରଳ ,
ଥରହର କମ୍ପିଲା ସେ ସପତ ପାତାଳ ,
ନାଗଲୋକ ତ୍ରାସିଲେ ଭୀମର ମୂର୍ତ୍ତି ଗୃହ୍ଣି ,

## କବିତାବଳୀ ।

ଅଗ୍ରଜଙ୍କ ଅସ୍ଥିର ହେଲେ ନାଗଲୋକ ଯାଇଁ
କେହ୍ନ ନ ଆସିଲେ ଯନ୍ତୁଁ ଭୀମଙ୍କର କତ ,
ସରୋଷେ ଚହିଁଲେ ଭୀମ କୁରୁଆଡେ ପ୍ରତ ,
କୁରୁବଳ ପାଣ୍ଡୁବଳ ହେଲେ ସ୍ତମ୍ଭୀଭୂତ ,
ଗମ୍ଭୀରେ ଅମ୍ବରେ ଯେହ୍ନେ ହୁଙ୍କାରେ ଜୀମୂତ
ଗର୍ଜ୍ଜିଣ କହନ୍ତି ଭୀମ ଭୀମପରାକ୍ରମ ,
କୌରବ ସହାରେ ଯେହ୍ନେ କଳାନ୍ତକ ଯମ
ଦୁଇବଳ ଅନାଇ ସେ ରହିଲେ ସ୍ତମ୍ଭିତେ ,
ଭୈରବ ହୁଙ୍କାରେ ଭୟ ଉପୁଜିଲା ଚିତ୍ତେ ।
"ଅରେ ଦୁର୍ଯ୍ୟୋଧନ ଅରେ କୁରୁ ଦୁରାଚାର !
"ଅରେ କର୍ଣ୍ଣ ଅବନୀପୃ ତାର କର୍ଣ୍ଣଧାର !
"ଅହେ କୁରୁ ସେନାପତି ମହାଧନୁର୍ଦ୍ଧର !
"ହେ ସୌବଳ ଦ୍ୟୂତଜୟୀ ହେ ଦ୍ରୋଣ କୁମର !
"ଅହେ ମହାବୀର ! ଏହା କେମନ୍ତେ ସହିବ ?
"ତୁମ୍ଭେ ଥାଉଁ' ଦୁଃଶାସନ ନାଶହିବ !
"ତବପ୍ରିୟ ଦୁଃଶାସନ ଅଟଇ କୁମର !
"ଆସି ରକ୍ଷା କର ବେଗେ ପ୍ରିୟ ସହୋଦର
"ସମ୍ପଦ କାଳକୁ ସଖା ସମସ୍ତେ ଥିଲ !
"ବିପଦ କାଳରେ କେହି ହିତ ନ ପଶିଲ"
ପୁଣି କୁରୁଯୋଧଙ୍କୁ ସମ୍ବୋଧି ବୃକୋଦର
ସଦର୍ପେ କହଇ "ଅହେ ଅହେ ଅସ୍ତ୍ରଧର
"ଶୂରେ ! ଭଲ ଆସି ରଣ ଦୁଃଶାସନ ଜୀବ ?
"ଦେଖ ସଖା ଥାଉଁ ଦୁଃଶାସନ ନାଶହିବ !
"କୁରୁ ନୃପତିର ଧନ ଭଣ୍ଡାର ଖାଇଲ ,
"ବିପଦ କାଳକୁ କେହି ସାହା ନ ହୋଇଲ ,"

କେହୁ ନ ଆସିଲେ ଯହୁଁ ଗର୍ଜି ବୃକୋଦର
ଦୁଃଶାସନ ମୁହଁ ଚାହିଁ କହିଲେ ବଙ୍କର !
"ଅରେରେ ଦୁରନ୍ତ କେହୁ ନ ଆସିଲେ କଛ !
"ଯାର ଆଜ୍ଞାବଳେ ଯାଜ୍ଞସେନୀଙ୍କ ଦୁର୍ଗତି
"କାହୁଁ ଦୁଷ୍ଟ ! ନୋହିଲା ସେ ଏତେବେଳେ ସାହା
"ରଖି ନ ପାରଲା ତୋର ଶିର କୁରୁନାଥ !"
ପୁଣି ସେ ଚାହିଁଲା ବୀର ନୀଜ ଆଠ ପ୍ରତି ,
"ଅଛି ସଦା ହୃଅ ଯାର ଅଛଇ ଶକତି ,
"କେ ଅସିବ ବେଗେ ଆସ ରକ୍ଷ ଦୁଃଶାସନ ,
"ଦେଖାଅ ଯାହାର ଯେତେ ଅଛୁ ବୀରପଣ ।
"ହେ କିରୀଟି ! ଧର ତୁମ୍ଭେ କୋଦଣ୍ଡ ଗାଣ୍ଡିବ
"ପାରିଲେ ରଖ ହେ ବୀର ଦୁଃଶାସନ ଜୀବ
"ତ୍ରିଭୁବନେ ମହାବୀର ବୋଲାଅ ଅର୍ଜ୍ଜୁନ !
"ଅଛି ତୋର ଅକ୍ଷୟ ସେ ଶରପୂର୍ଣ୍ଣ ତୂଣ ,
"ଧ୍ୱଜେ ବିରାଜଇ ତୋର ବୀର ହନୁମାନ ,
"ସାରଥି ଅଟନ୍ତି ତୋର ପ୍ରଭୁ ଭଗବାନ ,
"ପାଶୁପତ ଅସ୍ତ୍ରସିଦ୍ଧ ଅଟଇ ତୋହର
"ତୁ ପାରିଲେ ରଖ ବୀର ! କୌରବ ପାମର
"ହେ ମୁରାରି ! ସୁଦର୍ଶନଧାରୀ ଯଦୁବୀର !
"ତୁ ପାରିଲେ ରଖ ଦୁଷ୍ଟ ଦୁଃଶାସନ ଶିର,"
ନିନ୍ଦା ଦ୍ୱନ୍ଦ ଶୁଣି ପାର୍ଥ ଥିଲେ ନିରୁତ୍ତର .
ବାସୁଦେବ ନିନ୍ଦା ଶୁଣି ରୁଷିଲେ ଆବର ,
ବୀଜୟ ଗାଣ୍ଡିବେ ବୀର ଖଞ୍ଜିଲେ ସାୟକ .
ଧରିଲେ କିରୀଟି-କର ରୁକ୍ମିଣୀ ନାୟକ
ବୋଲନ୍ତି ଗାଣ୍ଡିବୀ "ପ୍ରଭୁ ! ନ କର ବାରଣ ,

"କଷ୍ଟେ ମୁଁ ରଖିବ ଭୀମଠୁଁ ଦୁଃଶାସନ .
"ସହି ମୁଁ ପାରଇ ସବୁ, ତୁମ୍ଭ ନିନ୍ଦା ବାଣୀ
"କେବେ ନ ସହିବ, ଏ ମୋ ପଣ ଚକ୍ରପାଣି
"କଷ୍ଟେ ଏକାଘାତେ ମୁଣ୍ଡ ହାଣିବ ଭୀମର ,
ତୁମ୍ଭ ନିନ୍ଦା ଯେ କରେ ସେ ନୁହେ ମୋ ସୋଦର"
ହୁଙ୍କୃତି ଗାଣ୍ଡିବ ନେଲେ ପ୍ରଭୁ ଚକ୍ରପାଣି
"ଛାଡ଼ ଭୀମ ମୁଣ୍ଡ ନ ପକାଅ ହାଣି ,
"କାହାକୁ କରୁଛ କୋପ ଅହେ ଧନଞ୍ଜୟ !
"ଯାର ଇଚ୍ଛାବଳେ କ୍ଷଣେ ହୁଅଇ ପ୍ରଳୟ ,
"ତା ତେଜେ ତେଜସ୍ୱୀ ଭୀମ ଅଟଇ ସମ୍ପ୍ରତ
"ଧର ଅସ୍ତ୍ର ମହାବୀର ସଂହାର ମୂରତ ,
"ନାହିଁ ବଳେ ଭୀମକୁ ଯେ ସଂହାରେ ଜିଣିବ ;
"ତୁ ପୁଣି ଦେଖାଉ ତାକୁ ଏସ୍ତର ଗାଣ୍ଡିବ
"ଏରୂପେ ନାଶିଲି ମୁହିଁ ହିରଣ୍ୟ କଶିପୁ ,
"ଏରୂପେ ନାଶଇ ମୁହିଁ ଧର୍ମର ଯେ ରିପୁ ,
"ଧର୍ମର ସହାୟ ସଦା ଏମୂର୍ତ୍ତି ମୋହର ,
"ଧର୍ମଦ୍ରୋହି ପାପୀ ପକ୍ଷେ ମହା ଭୟଙ୍କର"
ଏମନ୍ତେ ବୋଲନ୍ତେ ସିନ୍ଧୁ ସୁତା ପ୍ରାଣଧନ ,
ହୃଷ୍ଟେ ବସିଲେ ରଥେ ନରନାରାୟଣ ।
ତହିଁ ସହଦେବ ପ୍ରତି କହେ ଭୀମବୀର
"ବେଗେ ସଜେଇକର ଦାରୁ ପାଣ୍ଡବ ଶିବିର ,
"ପାଣ୍ଡବ–କେଶରୀ–ରାଣୀ ଆଣ ଯାଜ୍ଞସେନୀ ,
ଦୁଃଶାରକ୍ତ ଲିପ୍ତହସ୍ତେ ବାନ୍ଧିବ ତା ବେଣୀ ,
ଶୁଣି ଭୀମସେନ ବାଣୀ ମନ୍ତ୍ରୀ ଚୂଡ଼ାମଣି ,
ବେଗେ ସଜେ କଲେ ଯହିଁ ପାଣ୍ଡବ ରମଣୀ

ବସି ଥିଲେ ସଙ୍ଗ ପଞ୍ଚ—ଆଗମନ ଆଶେ ,
ମିଳିଲେ ସୁରେନ୍ଦ୍ର ଯାଇ ସଖୀଙ୍କ ସକାଶେ ।
ଦରହସିତ ବଦନ ଦେଖିଣ ତାଙ୍କର ,
ପଚାରନ୍ତି ଦେବୀ କହ ବାରତା ସୁନ୍ଦର ,
ବୋଲେ ସହଦେବ "ଦେବି ! ବଳେଙ୍କର ରଥେ
"ଏହିକ୍ଷଣି ଗଲ ଭୀମସେନଙ୍କ ଅଗ୍ରତେ
"ଭୀମସେନ ଠାକୁରଙ୍କ ଅଛି ଏ ଆଦେଶ ,
"ବାନ୍ଧିବେ କି ଆଜ ତୋର ଚିରମୁକ୍ତ କେଶ
"ଏତେଦିନେ କୃଷ୍ଣା ଦେବି ! ହେଲା ଅବସାନ ,
"କପଟ ପାଶାରେ ଦୁଷ୍ଟ କଲା ଅପମାନ ,
"ଲଭିବ ଉତ୍କଟ ଆଜ ତାର ପ୍ରତିଫଳ
"ଦୁଃଶାସନ ରକ୍ତେ ଧୀର ହେବ ସେ ଶୀତଳ,,
"ଶୁଣିଣ ଦ୍ରୌପଦୀ ଦେବୀ ଅନ୍ତରେ ସହାସ ,
ବେଗେଣି ମିଳିଲେ ଯାଇ ଭୀମସେନ ପାଶ ,
ମହାମାନୀ ପାଣ୍ଡବ ସମ୍ରାଟ-ପାଟରାଣୀ—
—ହସ୍ତ ଧରି ଭୀମ ଆଗେ ଭେଟାଇଲେ ଆଣି ,
ପଡ଼ିଅଛି ଦୁଃଶାସନ ପର୍ବତ ଆକାରେ ,
ବସିଣ ଉପରେ ଭୀମ ହର୍ଷିତେ ପ୍ରହାରେ
କାଳରୂପୀ ଭୀମସେନ ଭୈରବ ମୂରତି ,
ଦେଖିଣ ହସିଲେ ମନେ ପାଣ୍ଡବ ଯୁବତୀ ,
ଅସନ୍ତେ ଦ୍ରୌପଦୀ କହୁ ଧରିଣ ମଞ୍ଜୀର ,
"ଆସ ଆସ ଦେବି ଗୋ ''ଡାକଇ ଭୀମ ବୀର ,
"କୁରୁସଭା ତଳେ ବସ୍ତ୍ର କଲା ଯେ ହରଣ ,
ଛିନ୍ନ ବକ୍ଷ ଏହୁଟିକି ସେହୁ ଦୁଃଶାସନ ?
ଭଲକରି ଦେଖ ମୋର ଭ୍ରାତାଙ୍କ ବଦନ ,

"ଉପକାରୀ ପୁରୁଷ ଗୋ ଅଟନ୍ତି ଏଜନ ,
"କେତେ କେତେ ଦଣ୍ଡ ତୋତେ କୁରୁସଭା ତଳେ ,
"ଦେଉଥିଲେ ଜଙ୍ଘମଣି କୁରୁ ଅଙ୍କା ବଳେ ,
ଉତ୍ତରେ ପଡ଼ତ କୁରୁ ଭ୍ରାତା ମୁହିଁ ଗହିଁ
ଜଳଦ ଗମ୍ଭୀର ସ୍ୱନେ କହେ ଭୀମ ବୀର ।
ଅରେ ଦୁଃଶାସନ ତୋତେ ଛାଡ଼ିବ ଦଇବ ।
"ଛନିପୁର ରଖି ନ ପାରଲେ ତୋର ଜୀବ ,
"ସ୍ୱଜକୁଳ ଚୂଡ଼ାମଣି ଦ୍ରୁପଦ ରାଜନ ,
"ଶତରୁଷି ଯେନ କଲେ ଯଜ୍ଞ ଅନ୍ୟୋଜନ ,
"ହୋମାନଳ ବଦାର ଉଠିଲେ ଯେ ରମଣୀ ,
"ସାଧ୍ୱୀପଣେ ଯେ ନାଙ୍କୁ ଶ୍ରେଷ୍ଠ ବୋଲି ଗଣି ।
"ତୁ କ୍ଷୁଦ୍ର ପାମରରେ ଧରଲୁ ତାର କେଶ !
"ଗୁରୁ ଆଗେ ଅପମାନ କଲୁରେ ଅଶେଷ ,
"ପାଣ୍ଡୁକୁଳ ପାଟରାଣୀ କୃଷ୍ଣା ଯଜ୍ଞସେନୀ ,
"ଆକର୍ଷି ହିଙ୍କିଲୁରେ ପାମର ତାର ବେଣୀ ,
"କାଳେ କର୍ମ୍ମ ବୃକ୍ଷ ଫଳେ ଶାସ୍ତ୍ରର ଏ ଲେଖା ,
"ତେ ତୋ କର୍ମ୍ମଫଳ ଏତେଦିନେ ହେଲା ଦେଖା
"ଦପନଖେ ବିଦାରିବ ତୋର ବକ୍ଷସ୍ଥଳ ,
"ତେବେ ସେ ମୋହର କ୍ଷୁଆ ହୋଇବ ଶୀତଳ ;
"ଏବେ ଇଷ୍ଟଦେବଙ୍କୁ ସ୍ମରରେ ବୀର ଦୁଃଶା
"କରିବ ସମ୍ପ୍ରତି ତୃପ୍ତ ମୋ ରୁଧିର ତୃଷା ,
"ପଡ଼ଇ କି ମନେ ତୋର ଆରେ କୁରୁ କ୍ରୂର ।
"ଦାସୀପଣେ କୃଷ୍ଣାକୁ ଝିଙ୍କିଲୁ ଅନ୍ତଃପୁର
"ଯେକାଳେ, ସଭାସ୍ଥ ମନ୍ତ୍ରୀ କମ୍ପିଲେ ସକଳେ ,
"ଟଳିଲା ହସ୍ତିନା ଧର୍ମ୍ମ୍ୟସଭା ଟଳଟଳେ ,

ବେଣୀ ସଂହାର ।

"ଚନ୍ଦ୍ରଶାଳା ଚୂଡ଼େ ବସି ଶବ୍ଦିଲେ କେତେକ
"ଆରମ୍ଭିଲେ ନଘୋଷଦେଶେ ଶୁଭିଲା ଚଡ଼କ
"ରାବିଲେ ଭୀଷଣ ରବେ ଗୋମାୟୁ ଗର୍ଦ୍ଦଭ
"ସଭାସ୍ଥଳେ ଶୁଭିଲା ସେ ଭୟଙ୍କର ରବ ,
"ଚକିତ ହୋଇଲେ ସର୍ବେ ଭୀଷ୍ମ ଦ୍ରୋଣ ଆଦି
"ସ୍ୱସ୍ତି ୨ ଉଚ୍ଚରିଲେ ଋଷି ବ୍ରହ୍ମବାଦୀ
"ଅସ୍ଫୁଟ ଘୋଷଣା ସେହୁ ଜାଣି ନ ଜାଣିଲୁ
"ଅନିତ୍ୟ ଐଶ୍ୱର୍ଯ୍ୟ ମଦେ ଧର୍ମଙ୍କୁ ପୀଡ଼ିଲୁ ,
"ଅଗ୍ରଜ ବାତ୍ସଲ୍ୟ ଦୃଢ଼ କାରଣ ନଭର ,
"ଦ୍ରୁପଦ ଦାସ—ଭଷିଲୁ ତୁ ଥିଲୁ ରେ ବର୍ବର !
"ସେହୁ ଧର୍ମ ଅନ୍ତେ ଏବେ ହେଲନ୍ତି ପ୍ରବଳ ,
"ସେହୁ ଧର୍ମ ଏହୁକେ ଦେଉଛନ୍ତି ପ୍ରତିଫଳ,"
କହନ୍ତି ଦ୍ରୌପଦୀ, "ନାଥ ! ହେଜିଛନ୍ତି ସ୍ମରଣ
"ଅନ୍ତଃପୁରେ କୁନ୍ତୀ ସଙ୍ଗେ ଥିଲି, ଏ ଦୁର୍ଜ୍ଜନ
"ନିରଦୟ ନିରପେକ୍ଷ ନିର୍ଭୟେ ଚଣ୍ଡାଳ
"ବାମ କରେ କରଷି ଧରଣ ମୋର ବାଳ ,
"ଆଣନ୍ତେ ଚରଣ ନ ପଡ଼ଇ ଭୂମିତଳେ ,
"ପଦ ଉପ୍ଲାବିତ, ନାଥ କାଳି ଅଶ୍ରୁଜଳେ
"କୁରୁ ସଭାତଳେ ଗୁରୁଜନଙ୍କ ସମ୍ମୁଖ ,
"ଅବହେଳେ ବିବସନ କଲା ମତେ କ୍ରୂର ;
"ଆକୁଳେ ଡାକିଲି, ନାଥ, କେହୁ ନ ଶୁଣିଲେ
"ଭୀଷ୍ମ ଦ୍ରୋଣ ଆଦି କରି ବରିଷ୍ଠ ଯେ ଥିଲେ ,
"ସମସ୍ତଙ୍କୁ ହସ୍ତେ ବ୍ୟସ୍ତେ ଡାକିଲି ବନ୍ଦନ ,
"ଦୟା ନ ବହିଲେ ଶୁଣି ଅବଳା ରୋଦନ ,
"ଲଜ୍ଜା ନିବାରଣ କଲା ପ୍ରଭୁ ଭଗବାନ ,

"ଧର୍ମର ସହାୟ ହୋଇ କଲେ ପରତ୍ରାଣ
"ସେକାଳେ ବିକଳ ଯେତେ ହେଲା ଏ ହୃଦୟ ,
"ଜାଣନ୍ତି କେବଳ ଏହି ପ୍ରଭୁ ଦୟାମୟ ,
ତରୁଣୀ-କରୁଣ-ବାଣୀ ଶୁଣିଲେ ମାରୁତି ,
ହେଲା ସେ ବିଷମ ରୋଷ-ଅନଳେ ଆହୁତି ,
ପୂର୍ବ ଦୁଃଖ ଅପମାନ କଲେକ ସ୍ମରଣ ,
ବିତ୍ତହାନ, ଯତୁଗୃହ, ବନ ବିବସନ ,
ମହାକୋପେ ଗରଜିଲେ ପବନ ତନୁଜ ,
ଅକ୍ଳେଶେ ଧରିଲେ ଦୁଃଶାସନ ବାମଭୁଜ ,
ବକ୍ଷେ ଶିରେ ପାଦ ଚାପି ଉପାଡ଼େ ସେ ଭୁଜ ,

ଶବଦେ ଅବନୀ ଭୟେ କମ୍ପେ ଥରହର ,
ଭୁଜ ଉପାଡ଼ନ୍ତେ ଶବ୍ଦ ଶୁଭେ ଭୟଙ୍କର ,
କି ଅବା ଉପାଡ଼ି ପଡ଼େ ହିମାଦ୍ରି ଶିଖର ,
ପ୍ରଚଣ୍ଡ ବୈଷ୍ଣବ ତେଜେ ଗର୍ଜ୍ଜର ପାବନ ,
କି ଅବା ଗଗନୁ ଖସେ ଭୀଷଣ ଅଶନ ,
ଅଷ୍ଟକୁଳାଚଳ କମ୍ପେ, କମ୍ପେ ତନପୁର ,
ଆତଙ୍କେ କମ୍ପିଲେ ନାଗ ନର ସୁରାସୁର ,
ଦେବରଥେ ଶୂନ୍ୟପଥେ କମ୍ପିଲେ ଅରୁଣ ;
କୂଳ ପ୍ରକମ୍ପନ ଦେବ କମ୍ପିଲେ ବରୁଣ ,
କମ୍ପିଲା ସଘନେ ରମ୍ୟ ମୁକୁତା ସଦନ
ନୀଳ ଅମ୍ବୁରାଶି ତଳେ , କମ୍ପିଲା ଆସନ ,
ସୁରଙ୍ଗ ପ୍ରବାଳମୟ , ଭେଦ ଜଳରାଶି ,
ଯୁଗିଲେ ଜଳଙ୍ଗଦେବ ପାଶାଧରେ ପାଣି ।

ମହିଷ-ମର୍ଦ୍ଦିନୀ-ଚଣ୍ଡୀ-ପ୍ରଚଣ୍ଡ-ଶବଦ ,
ପ୍ରାଏକ କଲା ସେ ଶବ୍ଦ ତ୍ରିଲୋକ ସ୍ତବଧ ।

ଶୋଣିତ ପାଟଳ ଭୁଜ ଭୀମ ଉପାଡ଼ିଣ ,
ଗଗନକୁ ଫିଙ୍ଗି ଦେଲା ବେଗେ ବୁଲାଇଣ ,
ବରଷେ ରୁଧିର ବିନ୍ଦୁ ଆକାଶ ବିସ୍ତାରି ,
ଅନ୍ତରୀକ୍ଷେ ଶ୍ୟେନପକ୍ଷୀ ଭୁଜ ନେଲା ମାରି ।
ପୁଣି ଦକ୍ଷ ଭୁଜ ଧରି ଉପାଡ଼ିଲା ବଳେ ,
ଏଭୁଜେ ଧର୍ମଙ୍କୁ ବସାଇଲୁ ସଭାତଳେ !
ବୁଲାଇଣ ଫିଙ୍ଗି ଦେଲା ସେ ଭୁଜ ହୁଙ୍କାରି ,
ଅନ୍ତରୀକ୍ଷେ ଶ୍ୟେନପକ୍ଷୀ ପୁଣି ନେଲା ମାରି ।
କୃଷ୍ଣା କୃଷ୍ଣକେଶେ ରକ୍ତ ବର୍ଷିଲା ପ୍ରଚୁର ,
ବିଦାରିଲା ବୃକୋଦର ଦୁଃଶାସନ ଉର ,
ଦନ୍ତକଡ଼ମଡ଼ି ସିଂହ ପଡ଼େ ଅଚମ୍ବିତ
ବୃଷସ୍କନ୍ଧେ, ପଡ଼ି ଯେସନେ ପିଅଇ ଶୋଣିତ ,
ତେସନେ ବିକ୍ରମ ସିଂହ ଭୀମ ମହାବୀର
ରକ୍ତାକ୍ଷ, ଆବରି ବକ୍ଷେ ପିଅଇ ରୁଧିର ,
ଦୂରେ ବୃଷପତି ରହେ ସନ୍ତ୍ରାସେ ଅନାଇ ,
ତେସନେ ସନ୍ତ୍ରାସେ ଦୂରୁ ଚାହେଁ କୁରୁସାଇଁ ।
ରକ୍ତହସ୍ତେ ଯାଜ୍ଞସେନୀ ମୁକ୍ତ ଲମ୍ବକେଶ
ବାନ୍ଧିଲା ଅନନ୍ଦେ ବାୟୁନନ୍ଦନ ବୀରେଶ ,
ଅସ୍ତ ଗିରିଶୃଙ୍ଗେ ଏବେ ପ୍ରବେଶ ତପନ ,
ପଶ୍ଚିମ ଆକାଶ ଦିଶେ ଲୋହିତ ବରଣ ,
ଅସ୍ତଗାମୀ ରବିପ୍ରଭା ପଡ଼ି ରଣସ୍ଥଳେ ,
ଦିଶଇ ମିଶ୍ରିତ ଯେସନେ ପାଟଳ ପାଟଳେ ।
ସନ୍ଧ୍ୟା ଜାଣି ଦୁଇବଳ ଗଲେ ନିଜ ସ୍ଥାନ ,
ମହା ସୁଖେ ଏକ , ପୁଣି ମହାଶୋକେ ଅନ୍ୟ ।
ଦ୍ରୁପଦ ନନ୍ଦିନୀ ସଙ୍ଗେ ସୁନ୍ଦର ସ୍ୟନ୍ଦନେ

ବାହୁଡ଼ିଲେ ଭୀମବାହୁ ଭୀମ ହୃଷ୍ଟ ମନେ
ଯମୁନା ନିର୍ମଳ ନୀରେ ପଖାଳି ଶରୀର ,
ମିଳିଲେ ଯାଇଣ ଯାଇ ପାଣ୍ଡବ ଶିବିର ।

---

## ଅଯୋଧ୍ୟା—ପ୍ରତ୍ୟାଗମନ ।

( ସଂସ୍କୃତ ରଘୁବଂଶରୁ ଅନୁବାଦିତ । )

ଏଥୁଅନ୍ତେ ଶବ୍ଦବହ୍ନ ସୁନୀଳ ଅମ୍ବର ,
ପୁଷ୍ପକ ବିମାନେ ହୋଇଲେ ଭେଦ ବୀରବର ।
ନୟନେ ପଡ଼ନ୍ତେ ରତ୍ନ-ଆକର ଅର୍ଣ୍ଣବ ,
ସୀତାଙ୍କୁ ଭଷିଲେ ବାଣୀ ରହସ୍ୟେ ରାଘବ ।
ବଇଦେହି ନନ୍ଦନୀ ଦେଖ ମଳୟ ପର୍ଯ୍ୟନ୍ତ ,
ବିଭକ୍ତ ସେତୁରେ ମୋର ସିନ୍ଧୁ ଫେନବନ୍ତ ।
ଯେସନେ ଶରଦେ ଶୁଭ୍ର ତାରା ବିମଣ୍ଡିତ
ଗଗନ ଦିଶଇ ଛାୟାପଥେ ଦ୍ୱିଖଣ୍ଡିତ
ସମୁଦ୍ର ଉଦ୍ଭବ କଥା ଶୁଣ ଚାରୁପକ୍ଷ୍ମ !
ଜନମିଲେ ଆମ୍ଭ କୁଳେ ସଗର ନୃପତି ।
ଆରମ୍ଭିଲେ, ଯାଗ, ମେଧ୍ୟ ତୁରଙ୍ଗ ତାଙ୍କର
ପାତାଳେ ବାନ୍ଧିଲେ ଇନ୍ଦ୍ର କପିଳ ପାଶର ।
ଅଶ୍ୱ ଅର୍ଥେ ମହୀତଳ ସଗରଙ୍କ ପୁଏ,
ଖୋଳିଲେ , ତେଣୁ ଏହା ସାଗର ବୋଲାଏ ,
ସଲିଳ ପୋଷନ , ଘନ ରତନ୍ତ ତପନ
କଲନ୍ତି ଏହାର ଗର୍ଭେ ବିବିଧ ରତନ ।
ବାଡ଼ବ-ଅନଳ ଏହା କରଇ ଧାରଣ ,
ଏଥିରୁ ଗୋ, ଇନ୍ଦୁମୁଖି ଇନ୍ଦୁର ଜନମ ।
ଅନେକ ଅବସ୍ଥା ଭଜି ଅଛି ପାରାବାର ,

ଦଶଦିଗ ବ୍ୟାପି ଅଛି ଏହାର ବିସ୍ତାର ।
କହି ନୋହେ ଏହାର ସ୍ୱରୂପ ପରିମାଣ ,
ବିଷ୍ଣୁଙ୍କ ପରାୟେ ତାହା ଅତିକ୍ରମ ଜ୍ଞାନ ।
କଳ୍ପଅନ୍ତେ ସର୍ବଲୋକ ସଂହାରି କେଶବ ,
କରନ୍ତି ଏଥିରେ ଯୋଗନିଦ୍ରା ଅନୁଭବ ।
ନାଭି ପଦ୍ମାସନେ ପିତାମହ ସେ କାଳରେ ,
ବିଷ୍ଣୁଙ୍କୁ କରନ୍ତି ସ୍ତବ ସୁଗମ୍ଭୀର ସ୍ୱରେ ।
ପକ୍ଷ ଛେଦି, ଗିରି ଗର୍ବ ହରନ୍ତେ ବାସବ ,
ଆଶ୍ରିଲେ ଏହାର କୂଳ ମହୀଧର ସର୍ବ ।
ଯେସନ ଶତ୍ରୁର ଭୟେ ଭୀତ ନୃପଗଣ ,
ମଧ୍ୟସ୍ଥ ଭୂପାଳଠାରେ ପଶନ୍ତି ଶରଣ ।
ଯେକାଳେ ବରାହରୂପେ ରସାତଳୁ ହରି ।
ଅବନୀ ଦେବୀଙ୍କୁ ନେଲେ ଥିଲେକି ଉଦ୍ଧାରି ।
ଏହାର ବିମଳ ଜଳ ବଢ଼ି ପ୍ରଳୟରେ ,
ହୋଇଲା ଅବଗୁଣ୍ଠନ କ୍ଷଣେ ଭୂମୁଖରେ ।

*     *     *     *     *

ଜଳଜନ୍ତୁ ସହ ନଦୀ ମୁଖର ଜୀବନ ,
ଦୂରେ ତିମିବୃନ୍ଦ ମୁଖେ କରନ୍ତି ଗ୍ରହଣ ।
ସେ ମୁଖ ମୁଦିଲା ବେଳେ ରନ୍ଧ୍ର ଦେଇ ଜଳ
ଊର୍ଦ୍ଧ୍ୱକୁ ପ୍ରବାହରୂପେ ଉଠେ ଅବିରଳ ।
ଗଙ୍ଗାଙ୍କର ଗ୍ରାହଗଣ ଭେଦି ଫେନରାଶି ,
ତରଙ୍ଗ ଉପରେ ଦେଖ ଉଠୁଛନ୍ତି ଭାସି ;
ଦିଶୁଛି କପୋଳେ ଫେନପୁଞ୍ଜ ଲାଗିବାରୁ ।
କର୍ଣ୍ଣେ ଯେହ୍ନେ ବିରାଜଇ ଚାମର ସୁଚାରୁ ।
ଆକାରେ ତରଙ୍ଗ ସମ ଅଜଗର ଗଣ ,

ବାହାର ଅଛନ୍ତି ପିଇବାକୁ ସମୀରଣ ।
ଦୂରକରେ ଫଣାମଣି ତରଙ୍ଗର ଭ୍ରାନ୍ତି
ରତ୍ନାକର ଯୋଗୁଁ ଯା'ର ବଢ଼ି ଅଛୁ କାନ୍ତି ।
ଶୁଭ୍ର ବିମ୍ବାଧର ସମ ପ୍ରବାଳ ମାଳାରେ
ପଡ଼ି ଅଛୁ ଶଙ୍ଖ ଯୂଥ ତରଙ୍ଗ ବେଗରେ ।
ବନ୍ଧ ଅଛେ ମୁକ୍ତା ତାର ପ୍ରବାଳ ଅଙ୍କୁରେ ,
ତେଣୁ ବାହାରେ ତାହା ଅତି ବିଳମ୍ବରେ ।
ସିନ୍ଧୁ ଜଳ ପିଇବାକୁ ପ୍ରବର୍ତ୍ତିଣ ଘନ ,
ଭଉଁରି ବେଗରେ, ଦେଖ, ଭ୍ରମୁଛୁ କେସନ ।
ଏରୂପ ଦେଖ ମନକୁ ଏମନ୍ତ ଆସୁଛି ।
ସିନ୍ଧୁକୁ ମନ୍ଦରଗିରି କି ଅବା ମନ୍ଥୁଛି ।
ନୀଳ ବକ୍ଷେ ଶ୍ୱେତତାର୍କ୍ଷ୍ୟ–ତମାଳ ମାଳାରେ ,
ଲୌହଚିହ୍ନ ସମ ସିନ୍ଧୁ ଅଟଇ ଆକାରେ
ଚନ୍ଦ୍ରର କଳଙ୍କ ରେଖା ପ୍ରାୟ୍. ସେହି ତୀର ,
ଦୂରରୁ ଦିଶଇ , ଦେଖ କେମନ୍ତ ରୁଚିର ।
କେତକୀ କୋରଣ୍ଡରେ ଦେଖ ଧୀର ସମୀରଣ ,
ଭୂମି ମୁଖ ବିଶ ଲାଗି , କରୁଛି ମଣ୍ଡନ ।
* * * * *
ଚାହୁଁ ଚାହୁଁ ମୁହୂର୍ତ୍ତକେ ବିମାନ ବେଗରେ ,
ପହୁଞ୍ଚିଲୁ ଦେଖ , ଆସି ବେଳା ପ୍ରଦେଶରେ ।
ସେ ବେଳା, ଶୁକ୍ତି ନିର୍ଗତ ମୁକ୍ତାରେ ଶୋଭିତ ,
ଯହିଁରେ ଗୁବାକ ଶ୍ରେଣୀ ସଦା ଆନମିତ ।
ମୋର ଇଚ୍ଛା ଅନନ୍ତର ସଞ୍ଚରଇ ରଥ ,
କେତେବେଳେ ଅନିଳମ୍ବେ ଦେବତାଙ୍କ ପଥ ।
କେବେ ଘନ ପଥେ କେବେ ଉରଗ ମାର୍ଗରେ

ପୁଷ୍ପକ ବିମାନ ଦେଖି ଗଗନେ ସଞ୍ଚରେ ।

ତୁମ୍ଭ ମୁଖେ ସ୍ୱେଦବିନ୍ଦୁ ମଧ୍ୟାହ୍ନେ ଝରଇ ,
ତାହାକୁ ଆକାଶ ବାୟୁ ବହନେ ହରଇ !
ମନ୍ଦାକିନୀ ଶୀତ ଯୋଗୁଁ ଏ ବାୟୁ ଶୀତଳ ,
ବହଇ ଏ ଐରାବତ ମଦ ପରିମଳ ।

ସ୍ୟନ୍ଦନର ଗବାକ୍ଷରେ ଲମ୍ବାଇଣ କର
କୁତୂହଳେ ପରଶୁଛ ତୁମ୍ଭେ ଜଳଧର ।
ତୁମ୍ଭ କରକମଳରେ ଅର୍ପୁଅଛି ଘନ ,
ବିଜୁଳି ବଳୟ ରୂପେ ନବ ଆଭରଣ ।

ଦୂରେ ଦେଖ ବିରାଜଇ ଦଣ୍ଡକ କାନନ ,
ନୂତନ ନିର୍ମିତ ଯହିଁ ପର୍ଣ୍ଣ ନିକେତନ ।
ନାହିଁ ଆଉ ରକ୍ଷୋଭୟ, ଏଣୁ ଆନନ୍ଦରେ ,
ତପସ୍ୱୀଏ ନିବସନ୍ତି ଆଶ୍ରମ ନିକରେ ।

ତୁମ୍ଭ ପୟର ନେପୁର ପୟରରୁ ଖସି ,
ମଉନରେ ପଡ଼ିଥିଲା ଏଠାରେ ପ୍ରେୟସି !

ପୂରୁବେ ସେ ବାଜୁଥିଲା ପୟରେ ଗରବେ ,
ଭ୍ରଷ୍ଟ ହୋଇ ଦୁଃଖେ ଏଥି ଥିଲା ସେ ନୀରବେ ।

ଯେ ପଥେ ତୁମ୍ଭଙ୍କୁ ରକ୍ଷଃ ନେଇଥିଲା ହରି ,
ଦେଖାଇଲେ ସେହି ପଥ ମୋତେ ଦୟା କରି ।

ବଚନ ବିହୀନ ଏହି ବଲ୍ଲରୀ ନିକର ,
ସଞ୍ଚାଳି ପଲ୍ଲବମୟ ଶ୍ୟାମଶାଖା କର ।

ତେଜି ତୃଣାଙ୍କୁର ସ୍ପୃହା ମୃଗାଙ୍ଗନାଗଣ ,
ନିବେଶି ଦକ୍ଷିଣ ଅଡ଼େ ଉତ୍ଫୁଲ୍ଲ ନୟନ

ଜଣାଇଲେ ମୋତେ କେଉଁ ଦିଗେ ତୁମ୍ଭଗତି ,
ତାହା ଦେଖି ମୋ ହୃଦୟେ ଶୋକ ହେଲା ଅତି ।

ଦଶର ଅଗରେ ମାଲ୍ୟବାନ ମହୀଧର ,
ଗଗନ ପରଶୀ ଅଛି ଯାହାର ଶିଖର ।
ଘନଜଳ ସଙ୍ଗେ ତହିଁ ମୋ ନୟନ ଜଳ ,
ଝରିଲା ତୁମ୍ଭ ବିରହ ଯୋଗୁଁ ଅବିରଳ ।
ନବମେଘ ଜଳସିକ୍ତ ମୃତ୍ତିକା ସୁବାସ ,
କଦମ୍ବ କେଶର ଯାର ଅର୍ଦ୍ଧ ପରକାଶ ।
ନୀଳକଣ୍ଠ ମୟୂରର ଗମ୍ଭୀର ନିଃସ୍ୱନ ,
ତୁମ୍ଭ ବିନା ଏ ସକଳ ଦହିଲେ ମୋ ମନ ।
କନ୍ଦର ଝଙ୍କାର ମନ୍ଦ୍ର ଘନଗରଜନ ,
ଶୁଣନ୍ତେ ହୃଦୟ ମୋର ହେଲା ଉତ୍କଣ୍ଠିତ
ସ୍ମରନ୍ତେ ପୂର୍ବକଥା ଯେବେ ଥର ଥର ,
ଘଡ଼ିଘଡ଼ି ଭୟେ ମୋତେ ପକାଇଲ ଧରି
ଏଥି ବିକଶିତ ନବ କନ୍ଦଳୀ କୁସୁମ ,
ଯୁକ୍ତ ତହିଁ ଜଳସିକ୍ତ ମୃତ୍ତିକାର ଧୂମ
ଦେଖନ୍ତେ, ପଡ଼ିଲା ମନେ ବିବାହ ସମୟ
ଦାବାଗ୍ନି ପରାୟେ ଶୋକ ଦହିଲା ହୃଦୟ ।
ସେ ମଧୁର କାଳେ ତୁମ୍ଭ ନୟନ ଯୁଗଳ
ପୂର୍ଣ୍ୟଧୂମ ଯୋଗୁଁ ଅହା କେମନ୍ତ ପାଟଳ
ଅଛଇ ବିରଳେ ରମ୍ୟ ପମ୍ପାସରୋବର ,
ଯାହାର ଦର୍ଶନେ ଖିନ୍ନ ହୋଇଲି ଅନ୍ତର ।
ଚଉଦିଗ ସମାଚ୍ଛନ୍ନ ଜବଡ଼ ବେତସେ ,
ଜଳେ ବିହରନ୍ତି ଦେଖ, ଆନନ୍ଦେ ସାରସେ
ଉତ୍ପଳ କେଶର ଦେଇ ପରସ୍ପର ମୁଖେ
ରଥାଙ୍ଗ ମିଥୁନ ଏଥି ବସିଥିଲେ ସୁଖେ ।
ତୁମ୍ଭ ବିରହରେ କରୁ ଏଛନ୍ଦ ଦର୍ଶନ

## ଅଯୋଧ୍ୟା-ପ୍ରତ୍ୟାଗମନ ।

ପୂର୍ବ ସୁଖମାନ , ଆହା , କରନ୍ତି ସ୍ମରଣ !
ସ୍ତବକସ୍ତନରେ ନମ୍ର ଅଶୋକ ବଲ୍ଲରୀ
ଦେଖି , "ପାଇଲି ତୁମ୍ଭଙ୍କୁ "ଏହା ମନେକରି"
ଅଧୀର ହରଷେ ଯୋକେ , ଆଲିଙ୍ଗନ ଆଶେ
ଅଶ୍ରୁପୂର୍ଣ୍ଣ ନୟନରେ ଧାଆନ୍ତେ ତା ପାଶେ ,
"ନୁହନ୍ତି ଏ ସୀତାଦେବୀ" ସୁମିତ୍ରା ନନ୍ଦନ ,
ଏମନ୍ତ ବୋଲିଣ ମୋତେ କଲେ ନିବାରଣ ।
ବିମାନ ଲମ୍ବିତ ହେମ କିଙ୍କିଣୀ ଶବଦ ,
ଶୁଣିଣ ସାରସେ ତେଜି ଗୋଦାବରୀ ହ୍ରଦ
ଉଡ଼ି ନୀଳମଣିମୟ ଅମ୍ବର ମାଗତେ ,
ତୁମ୍ଭଙ୍କୁ ପାଶ୍ରେଷ୍ଟ ଆସୁଛନ୍ତି କି ଆଦରେ ?
ବହୁଦିନ ପରେ ଦେଖ ପଞ୍ଚବଟୀ ବନ
ଯାର ଦରଶନେ ହର୍ଷେ ନିମଗ୍ନ ମୋ ମନ
ସୁମଧ୍ୟମା ତୁମ୍ଭେ ସିଞ୍ଚ ଘଟର ସଲିଳ
ଏହିବାଳ ଚୂତ ତରୁ ବଢ଼ାଇଣ ଥିଲ ।
ତୁମ୍ଭର ପାଳିତ ଏହି କୃଷ୍ଣସାର ପନ୍ତି ,
ନୟନ ତୁଳାଇ ରଥ ଅଡ଼କୁ ଚାହାନ୍ତି ।
ମୃଗୟାରୁ ବାହୁଡ଼ିଣ ଏଥିଗୋ ସୁନ୍ଦର ,
ତରଙ୍ଗ-ଅନିଳେ ଦେହ କ୍ଳାନ୍ତ ପରିହରି ,
ପ୍ରଦୋଷେ ତୋ କୋଳେ ଶିର ନିହି ପ୍ରେମଭରେ ,
ଶୋଇଥିଲି ପ୍ରିୟେ ! ମଞ୍ଜୁ ବଞ୍ଜୁଳ କୁଞ୍ଜରେ ।
ଦେଖ , ରୂପବତି ! ଦିଶେ ମନୋରମ ,
ସମସ୍ତ ଲୋକ ପାବନ ଅଗସ୍ତ୍ୟ ଆଶ୍ରମ ।
ଭ୍ରୂଭଙ୍ଗ ମାତ୍ରକେ ଯା'ର ନହୁଷ ନୃପତି ,
ଭ୍ରଷ୍ଟ ହୋଇ ଇନ୍ଦ୍ରପଦୁଁ ଭଜିଲେ ଦୁର୍ଗତି ।
କ୍ଷୀରଦରେ ନଭେ ଦେଖି ଯାହାଙ୍କ ଉଦୟ

ହୁଏ ନରମନ , କଳୁଷିତ ବାଉନୟ ।
ଯାର ଅଗ୍ନିହୋତ୍ର-ଧୂମ ହୋମ ଗନ୍ଧମୟ
ଆଘ୍ରାଣ କରନ୍ତେ ଶୁଦ୍ଧ ହୋଇଛି ହୃଦୟ ।
ମହାଯଶା ମହର୍ଷି ଏ ପ୍ରଭାବେ ଯାହାର ,
ହେଲେ ଦୂର ହୁଏ ନର ହୃଦୟ ବିକାର ।
ଦଶୁଅଛୁ ମାନମୟି ! ରମ୍ୟ ପଞ୍ଚାପ୍‌ସର ,
ଶାତକର୍ଣ୍ଣି ମହର୍ଷିଙ୍କ କେଳି ସରୋବର ।

ଚଉଦିଗ ବେଢ଼ି ଅଛି ବିବିଧ କାନନ ,
ମେଘ ଅନ୍ତରାଳେ ଇନ୍ଦୁ ମଣ୍ଡଳ ଯେସନ ।
ତେସନ ଦୂରରୁ ଦିଶେ ଏ ସରୋ ରତନ ।

ପୂର୍ବେ କୃଷ୍ଣାଙ୍କୁର ମାତ୍ର କରିଣ ଆହାର ,
ସୁରଙ୍ଗ କୁରଙ୍ଗ ସଙ୍ଗେ କରିଣ ସଞ୍ଚାର ,
ଆଚରିଲେ ଘୋରବ୍ରତ ଶାତକର୍ଣ୍ଣି ଯତି ,
ତାହା ଦେଖି ଭୀତ ହେଲେ ସୁରରାଜ ଅତି ।
ଯୌବନ କପଟ ମନ୍ତ୍ରେ ପାଶ ଅପ୍ସରୀ ,
ବାନ୍ଧିଲେ ଯୋଗୀମାନସ-ମୃଗ ସୁଜାଣିରି ,
ଛଳତଳେ ନର୍ମେ ତହିଁ ନବସନ୍ତ ମୁନି ,
ବହୁଅଛି ବାୟୁ ତାଙ୍କ ମୃଦଙ୍ଗର ଧ୍ୱନି ।
ଗଗନରେ ଉଠି ତାଙ୍କ ମଧୁର ସଙ୍ଗୀତ
ପୁଷ୍କର ଚନ୍ଦ୍ରଶାଳା କରେ ନିନାଦିତ ।
ସୁତୀକ୍ଷ୍ଣ ନାମେ ତେଜସ୍ୱୀ ଶାନ୍ତ ଋଷିବର ,
ଆଚରନ୍ତି ଘୋରତପ କେଶ ରାମାବର ।
ଅଗ୍ନି ଚତୁଷ୍ଟୟ ମଧ୍ୟେ ବସି ତପୋଧନ
ପ୍ରଚଣ୍ଡ ଭାସ୍କର ବିମ୍ବେ ଅର୍ପନ୍ତି ନୟନ ।
ତାଙ୍କର କଠୋର ତପେ ଭୀତ ପୁର-ଅରି

ବ୍ରତଭଙ୍ଗ ଆଶେ ପାଶେ ପେଶିଲେ ଅପ୍ସରୀ ।
ସୁରସୁନ୍ଦରୀଙ୍କ ନାନା ବିଳାସ ଲଳିତ
ନ ପାରିଲା ମୋହି ଶାନ୍ତ ମୁନିବର ଚିତ୍ତ ।
ବୃଥା ତାଙ୍କ ହାସ୍ୟ ମୁଖେ କଟାକ୍ଷ ପ୍ରେରଣ ,
ବୃଥା ଛଳକ୍ରମେ ମେଖଳାର ପ୍ରଦର୍ଶନ ।
ଧରି ଅଛି ଅକ୍ଷମାଳା ବଳୟ ଯେ କର ,
ମୃଗ—ଦେହ କଣ୍ଡୂୟନେ ଯେ ଅଟେ ତତ୍ପର ।
ସେ ଦକ୍ଷିଣ ହସ୍ତ ମୋର ସମ୍ମାନ ନିମନ୍ତେ
ପ୍ରସାରିତ ହୋଇ ଅଛୁ ଊର୍ଦ୍ଧ୍ୱକୁ କେମନ୍ତେ ?
ସତ୍ୱା ମୌନବ୍ରତୀ ମୁନି , ଶିର ପ୍ରକମ୍ପରେ ,
ପ୍ରଣତି ଗ୍ରହଣ ମୋର ଚିତ୍ତ ପ୍ରସାଦରେ ।

ବିମାନର ବ୍ୟବଧାନୁଁ ବିମୁକ୍ତ ଈକ୍ଷଣ
ନିହ୍ନଲେ ଭାସ୍କର ହର୍ମ୍ୟେ ପୁଣି ତପୋଧନ ।

ଅଗ୍ରତେ ଦିଶଇ ପ୍ରିୟେ ଅତିଥି ଶରଣ ।
ଶରଭଙ୍ଗ ମହର୍ଷିଙ୍କ ପୁଣ୍ୟ ତପୋବନ ।

ମହାତପା ଋଷି ବହୁବଳ୍କଳ ଭବନରେ ।
ସାଧି ହୁତାଶନ ତୃପ୍ତି ସଂଯତ ମନରେ ।

ଅବଶେଷେ ମନ୍ତ୍ରପୂତ ନିଜର ଶରୀର
ଅର୍ପିଲେ ଅହୁତିରୂପେ ଆନନ୍ଦେ ଅଗ୍ନିର ।
ସ୍ନିଗ୍ଧ ଛାୟା ସୁମଧୁର ଫଳ ଦାନ କରି
ପଥିକର ପରିଶ୍ରମ ଦୟାଦ୍ରବେ ହରି ,

ତପୋବନେ ତରୁବୃନ୍ଦ ସୁପୁତ୍ର ଯେସନ
ଅତିଥି ସତ୍କାର ବ୍ରତ କରନ୍ତି ପାଳନ ।
ଧରି ଦର୍ପ କଳାମତ୍ତ ବୃଷଭର ଶିରୀ
ହରିଛ ନୟନ ପ୍ରିୟେ ତଟଙ୍କୁ ଚିର ,

ବୃଷମୂଖ ତୁଲ୍ୟ ଏହି ଗିରିର କନ୍ଦର ,
ନିରନ୍ତର ନିର୍ଝରର ନିନାଦେ ମୁଖର ,
ବପ୍ରପଙ୍କ ପରି କଳା ନବ ଜଳଧର
ଘୋଟିଅଛି ଦେଖ ପ୍ରିୟେ ପର୍ବତ ଶିଖର !
ଚିତ୍ରକୂଟ ଗିରିପାର୍ଶ୍ୱେ ବହେ ମନ୍ଦାକିନୀ
ଦୂରୁଁ ଦିଶେ ସୂକ୍ଷ୍ମରେଖା ପରାଏ ତଟିନୀ ,
ପ୍ରଶାନ୍ତ ନିର୍ମଳ ଯଥା ଦେବତାଙ୍କ ମ
ଜାହ୍ନବୀର ଜଳ ଯଥା ତେମନ୍ତ ପ୍ରସନ୍ନ
ଅବନୀ ରମଣୀ କଣ୍ଠେ ମୁକ୍ତାହାର ହାର
ପ୍ରାୟେ ମନ୍ଦାକିନୀ, ପ୍ରିୟେ, ଦିଶଇ ଉଦାର ।
ଏହି ସେ ତମାଳତରୁ ଦିଶଇ ମଞ୍ଜୁଳ
ଉଦ୍‌ଗ୍ରୀବ କଳାପି କୁଳେ ନିତ୍ୟ ସମାକୁଳ
ସୁରଭି ପଲ୍ଲବେ ଯାର କରି ସୁଯତନ
ରଚିଲୁ ପ୍ରେୟସି ତୁମ୍ଭ ଶ୍ରବଣ ଭୂଷଣ ,
ଯବାଙ୍କୁର ସମ ପାଣ୍ଡୁ ଗଣ୍ଡରୁ କପୋଳର
ସେ ରମ୍ୟ ଭୂଷଣ ଲାଗି ରାଜିଲା ସୁନ୍ଦର ।
ଅଗ୍ରତେ ବାଳର ଅତ୍ରି ମୁନି ତପୋବନ
ତପସ୍ୟା ପ୍ରଭାବେ ଯହିଁ ଘଟେ ଅଘଟନ ;
ଦଣ୍ଡଭୟ ବିନା ଯହିଁ ଜନ୍ତୁଏ ଶାସିତ ,
ପୁଷ୍ପବିନା ତରୁବୃନ୍ଦ ହୁଅନ୍ତି ଫଳିତ ,
ଯେ ଜାହ୍ନବୀ ଜଳୁ ସପ୍ତଋଷି ସ୍ୱହସ୍ତରେ
କନକ କମଳଚୟ ତୋଳନ୍ତି ଅମ୍ବରେ ,
ଯାହାର ପ୍ରବାହ , ଶିରେ , ପ୍ରସନ୍ନ ପାବନ,
ନନ୍ଦେ ହର, ମାଳାରୂପେ କରନ୍ତି ଧାରଣ ,
ସେହି ଭାଗିରଥୀ ବହୁଛନ୍ତି ଏହି ବନେ

ଅତ୍ରି ସଧର୍ମିଣୀ ଅନସୂୟାଙ୍କ ଯତନେ ,
ତପସ୍ୱିମାନଙ୍କ ସ୍ନାନ—ଅର୍ଥେ ତପସ୍ୱିନୀ
ତପସ୍ୟା ବଳରେ ଆଣିଥିଲେ ମନ୍ଦାକିନୀ ।
ବିଦେହ ନନ୍ଦିନୀ, ଦେଖ, ବସି ବଗ୍ରସନେ
ଧ୍ୟାନେ ରତ ମୁନି ବୃନ୍ଦ ଏକତାନ ମନେ

ତାଙ୍କ ବେଦୀ ମଧ୍ୟଗତ ମହୀରୁହ ଦଳ
ସମୀର-ଅଭାବେ ହୋଇ ଏକାନ୍ତ ନିଶ୍ଚଳ
ଯୋଗ-ମଗ୍ନ ଯୋଗୀ ପ୍ରାୟେ ଦିଶନ୍ତି ସକଳ

ଏବେ ସେହି ଶ୍ୟାମବଟ ବନ୍ଦେ ଅଗ୍ରତେ
ଯାର ପାଶେ ବନ୍ଧା କହି ଥିଲ ପତିବ୍ରତେ ।
"ମୋନାଥ ହୁଅନ୍ତୁ ପାର ସବ ସଙ୍କଟରୁ
ନିର୍ବିଘ୍ନେ କରନ୍ତୁ ବ୍ରତ ରକ୍ଷା ମହାତରୁ !"
ପଦ୍ମରାଗ ଫଳପୁଞ୍ଜ ପତ୍ର ମରକତେ
ମଣ୍ଡିତ, ଏ ବୃକ୍ଷରାଜ ଦିଶଇ କେମନ୍ତେ ?

ଜାହ୍ନବୀ ଯମୁନା ସଙ୍ଗ ଦେଖ ଗୋ ସୁନ୍ଦରି !
ଶୁଭ୍ର ନୀଳ ଜଳ ଦିଶେ ରୁଚିର କପଟ ?
ଇନ୍ଦ୍ର ନୀଳ ସରେ ମୋତି ପୁଣି ଇନ୍ଦ୍ର ନୀଳ
ଗୁନ୍ଥା ହେଲା ମାଳା ପ୍ରାୟେ ଦିଶଇ ସଲିଳ ,
କିମ୍ବା ଇନ୍ଦୀବରେ ମିଶି ଶ୍ୱେତ ଶତଦଳ——
ମାଳାପରି ଦିଶେ ଏହି କଳା ଧଳା ଜଳ ,

ଅଥବା ମାନସଗାମୀ ରାଜହଂସ ପନ୍ତି
କାଦମ୍ବ ଦଳ ସଂଯୋଗେ ଯେମନ୍ତ ଦିଶନ୍ତି ,
ଅଥବା ଅବନୀବର ବଦନେ ରଚିତ
ଚନ୍ଦନ ରଚନା କୃଷ୍ଣ ଅଗୁରୁ ମିଶ୍ରିତ ,
ଅଥବା ଯେମନ୍ତ ଦିଶେ ସୁନୀଳ ଗଗନ

ଶୁଭ୍ର ଶରଦର ଚନ୍ଦ୍ର ଦଶନ ଶୋଭନ ,
ଅବା ଧଳା ଭସ୍ମ ବୋଳା ଶଙ୍କର ଶରୀର,
ଅସ୍ଥିର ତରଙ୍ଗେ ଯଥା ସାଗର ରୁଚିର ,

କିଅବା ସ୍ୱଚ୍ଛରେ ମିଶା ଚନ୍ଦ୍ର ଜ୍ୟୋତ୍ସ୍ନା ପର
ଦଶନ, ପ୍ରେୟସୀ, ଗଙ୍ଗା ଯମୁନା ଲହରୀ ।

ତ୍ରିଲୋକ ପାବନ ଗଙ୍ଗା ଯମୁନା ସଙ୍ଗମ
ମୁମୂର୍ଷୁ ଜନର ଅଟେ ଆଶ୍ରୟ ଚରମ ,

ବିଦେହ ନନ୍ଦିନି ! ଏଥି ଲୋକେ କରି ସ୍ନାନ
ଲଭନ୍ତି ପରମ ଗତି ବିନା ତତ୍ତ୍ୱଜ୍ଞାନ ।

ଏହି ଯେ କିରାତ ପତି ଗୁହକ ନଗରୀ ,
ପଡ଼ଇ କି ମନେ ପୂର୍ବ କଥା ଗୋ ସୁନ୍ଦରୀ ?

ଏଥି ଗୋ ମସ୍ତକୁଁ କାଢ଼ି କନକ ମୁକୁଟ ,
ରଚିଲି ତାପସ ଯୋଗ୍ୟ ଭବ ଜଟାଜୁଟ ,

ସେକାଳେ ସୁମନ୍ତ୍ର ଅଶ୍ରୁପୂର୍ଣ୍ଣ ଲୋଚନରେ

ଅକାରଣ ମୋ ଅଡ଼କୁ ମ୍ଳାନ ବଦନରେ
କୈକେୟି ! ଫଳଲା ଏବେ ତୁମ୍ଭ ମନୋରଥ ।

ଏମନ୍ତ ଭାଷିଲେ ଦୁଃଖେ ବାହୁଡ଼ାଇ ରଥ ।

ସରଯୂର ତଟେ ଏବେ ରଥ ଉପନୀତ ,
ତଥବା ଜନନୀ ସମ ଅଛନ୍ତି ସରତ ,

ପରବାସୁଁ ସମାଗତ ଦେଖି ମୋତେ ପାଶେ
ଧବଳ ତରଙ୍ଗ କର ଆଲିଙ୍ଗନେ ଅଶେ ।

ପ୍ରସାରନ୍ତି ତରଙ୍ଗିଣୀ ଅବା ସ୍ନେହ ଭରେ ,
ଶୀକର ଶୀତଳ ବାୟୁ ମନସ୍ତାପ ହରେ ।

କନକ କମଳ ଭଳି ଯା ଜଳେ ବିକଶେ ,
ସଦା ଯହିଁ ଯକ୍ଷବାଳା କ୍ରୀଡ଼ନ୍ତି ହରଷେ ,
ସେହି ଯେ ମାନସ ହ୍ରଦ ମାନସ-ହରଣ

ବେଦମତେ ସରଯୂର ଜନମ କାରଣ ।
ପଙ୍କଜ ସଲିଳା ଏହି ନଦୀ କୁଳେଶ୍ୱରୀ ,
ଏହାର ପୁଲିନ ଦେଶ ମାତା କୋଳ ପରି ,
ପିଇଣ ଏହାର କ୍ଷୀର ସମ ସୁଧାପୟ ,
ବର୍ଦ୍ଧିତ କୋଶଳ ଦେଶ ନରେଶ୍ୱର ଚୟ !
ଗୋଧୂଳି ଆକାଶ କର ତାମ୍ର ଧୂଳି ରାଶି
ଦେଖ ଗୋ ସୁନ୍ଦର ! ଆଗେ ଆସୁଅଛୁ ଭାସି ,
ହନୁମନ୍ତ ମୁଖୁଁ ପରା ଶୁଣି ମୋ ସନ୍ଦେଶ
ସୈନ୍ୟ ସଙ୍ଗେ ଆସୁଛନ୍ତି ଭରତ ନରେଶ ,

ରଣେ ଖର ଦୂଷଣଙ୍କୁ ବଧ ବାହୁବଳେ
ତୁମ୍ଭଙ୍କୁ ମୋ କରେ ଦେଲେ ସୌମିତ୍ରି ଯେମନ୍ତେ ,
ପିତୃ ସତ୍ୟ ପ୍ରତିପାଳି ମୁହିଁ ପ୍ରତ୍ୟାଗତ ,
ରାଜ୍ୟଶ୍ରୀ ଅର୍ପିବେ ଏବେ ମୋଠାରେ ଭରତ ;

ଆଗରେ ବଶିଷ୍ଠ ପଛେ ଭରତ ସୁମନ୍ତ ,
ଚଉପାଶେ ବେଢ଼ିଛନ୍ତି ଅମାତ୍ୟ ପଣ୍ଡିତ ,
ତହୁଁ ପଛେ ଶୂରସେନା ରଣେ ଚତୁରଙ୍ଗୀ
ସାଗର ଲହରୀ ସମ ତରଙ୍ଗେ ଆସଇ ?
ବଲ୍କଳ ବସନ ଦେହେ, ଅର୍ଘ୍ୟ ପାତ୍ର କରେ
ଧାର୍ମିକ ଭରତ ଆସୁଛନ୍ତି ନତ ଶିରେ ।

ନାଚବନ୍ତେ ରାମ ଦେବ ବିମାନ
ଇଚ୍ଛା ଜାଣି ବେଗେ ଓହ୍ଲା ସମାନ ;
ତାର ପଥୁଁ ଖସେ ଅବନୀ ତଳ ,
ଅନମ୍ବର ଦେଶ ଦଶେ ଉଜ୍ଜ୍ୱଳ ,
ଅନାଇଲେ ବସୁନ୍ଧରେ । ଯେ
ଆନନ୍ଦ ମଗନ, ଅଯୋଧ୍ୟା ନିବାସୀ ଭରତଙ୍କ ଅନୁଚରେ ଯେ ।

ବିଭୀଷଣ ଆଗେ ଦେଖାନ୍ତି ବାଟ ,
ଶୀକର ଧରନ୍ତି କପି ସମ୍ରାଟ ,
ବେନିଏ ମହେନ୍ଦ୍ର ସେବା ଚତୁର ,
ସୋପାନେ , ଅବନୀ ତଳୁ ଅଦୂର ,
ପଦ ଦେଇ ରଘୁପତି ,
ପୁଷ୍ପକ ପଦ୍ଧବୀ କରିଣ ପବିତ୍ର ବିଜେ କଲେ ବସୁମତୀ ।
ପ୍ରଣମି ବଶିଷ୍ଠ ମୁନି ଚରଣେ
ଅର୍ଘ୍ୟ ଦେନି ପ୍ରଭୁ , ସାଶ୍ରୁ ନୟନେ
ଚୁମ୍ବିଲେ ଭରତ ଶୁଦ୍ଧ ଶିର
ଆଲିଙ୍ଗି ଆଦରେ ରଘୁ ପ୍ରବୀର
ଧନ୍ୟ ସେ ସାଧୁ ଭରତ
ଭୋଗ ପରିହରି , ଭ୍ରାତୃ ପ୍ରେମ ବଶେ , ଆଚରିଲେ ଯଦବ୍ରତ ।
ଦେଖ ହେ ଭରତ , କପି ଈଶ୍ୱର
ବିପଦ ବନ୍ଧୁ ଏ ଦୁଃଖୀ ରାମର ,
ମହା ମିତ୍ର ମୋର ଏ ବିଭୀଷଣ
ଅଘାତି ବନାଶେ ଅତି ଭୀଷଣ
ଭାଷନ୍ତି ରାମ ଏସନ ,
ଲକ୍ଷ୍ମଣ ଉପେକ୍ଷି, ବେନିଙ୍କି ଭରତ, ସାଦରେ କଲେ ବନ୍ଦନ ।
ଭରତ ଚରଣେ ନୁଆଇଁ ଶିର
ସାଷ୍ଟାଙ୍ଗେ ନମିଲେ ସୌମିତ୍ରି ବୀର ;
ଉଠାଇ ଭରତ ତାଙ୍କୁ ସାଦରେ
ଆଲିଙ୍ଗିଲେ ଅଙ୍ଗ ପ୍ରେମ ନିର୍ଭରେ ,
ଅନୁଭବ ସେ ଆଶ୍ଳେଷେ
ମେଘନାଦ ଭୀମ ପ୍ରହାର ଅଙ୍କିତ ବକ୍ଷ ତ ଯେ ଉରୋଦେଶେ ।
କପି ସେନାନୀଏ ମନୁଷ୍ୟ ବେଶ

ଧରିଲେ ଲକ୍ଷ୍ମଣ ରାମ-ଆଦେଶ ,
ବସିଲେ ବାରଣୀନ୍ଦ୍ର ପୃଷ୍ଠରେ ,
ମଦବାରି ଧାର ଯା ଗଣ୍ଡ ସ୍ଥଳରେ ,
ଶଇଳୁ ଯେମନ୍ତେ ନିର୍ଝର ,
ପରତଖ ଗିରି ଆରୋହଣ ସୁଖ ତହିଁ ଲଭିଲେ ବାନର ।

ବିଭୀଷଣ ପ୍ରଭୁ ଆଦେଶ ମତେ ,
ସଗଣେ ବସିଲେ ସୁନ୍ଦର ରଥେ
କିଅବା ଦେବା ସେ ରଥ ଉପମା ?
ଭୂତଳେ ଅତୁଳ ଯାର ସୁଷମା
ସେ ସ୍ୟନ୍ଦନ ଦରଶନେ
ନିଶାଚରଙ୍କର , ଲଙ୍କାରେ ସ୍ୟନ୍ଦନ ଶୋଭା ପଡ଼ିଗଲା ମନେ ।

ନାମ ଗରୁଡ଼ ଧ୍ୱଜ ଶୋଭିତ ରଥେ
ବସିଲେ ନୃମଣି ଭ୍ରାତା ସଙ୍ଗତେ ,
ବୁଧ ବୃହସ୍ପତି ଯୋଗେ ଯେସନ
ପ୍ରଶାନ୍ତ ଶଶାଙ୍କ ତାରା ରମଣ
ସାୟନ୍ତନ ଘନ ପରେ
କେତନ ପରେ ସ୍ୱର୍ଣ୍ଣ ସୌଦାମିନୀ ସ୍ଫୁରୁଥାଏ ଅନମ୍ବରେ ।

ପ୍ରଳୟ ବସାଦ ରୂପୀ ମୂରତ
ବସୁନ୍ଧରା ଯେମନ୍ତେ ଥିଲେ ଉଦ୍ଧାରୁ ,
ଜ୍ୟୋତ୍ସ୍ନାକୁ ଯେସନ ଶରତ କାଳ
ପ୍ରକାଶେ, ବିନାଶି ଜଳଦ ମାଳ ,
ସୀତା ସତୀଙ୍କି ତେସନ
ଉଦ୍ଧାରିଲେ ରଘୁ କୁଳ-ରବି ରାମ ସଂହାରି ରଣେ ରାବଣ ।

ସେ ସୀତା ଚରଣେ ଶିର ଭରତ
ଲଗାଇଲେ ଭକ୍ତି ଭାବେ ତଦ୍ଗତ ,

ଜାନକୀ ସତ୍ୱର ସବଳ ଅତି ,
ନ ଘେନିଲା ଲଙ୍କାପତି ପ୍ରଣତି ,
ରାମ ପ୍ରେମେ ଜଟାଧର
କୈକେୟୀ ନନ୍ଦନ ଶିର ଲାଗି ତହିଁ ପୂତ ହେଲେ ପଟେଶ୍ୱର ।
ଧାଇଁଲେ ଅଗ୍ରତେ ବ୍ୟଗ୍ର ପ୍ରଜାଏ ,
ପଛେ ପୁଷ୍ପ ଶୋଭି ପୁଷ୍ପକ ଯାଏ ,
ଅର୍ଦ୍ଧ କ୍ରୋଶ କ୍ଷଣେ ହୁଅନ୍ତେ ପାର ,
ଦିଶିଲା ବସନ-ଗୃହ ଦ୍ୱାର
ଅଯୋଧ୍ୟାର ଉପବନେ ,
ଆନନ୍ଦେ ବୈଦେହୀ-ନନ୍ଦିନୀଲକ୍ଷ୍ମଣ ମିଳିଲେ ତହିଁ ସଗଣେ ।

ସମାପ୍ତ ।

